# ଆଧୁନିକ ଓଡ଼ିଆ ସାହିତ୍ୟ: ଉନ୍ମେଷ ପର୍ବ

(ଊନବିଂଶ ଶତାବ୍ଦୀ ଓଡ଼ିଆ ମିଶନାରୀ ସାହିତ୍ୟ)

ଡକ୍ଟର ସ୍ମରଣ କୁମାର ନାୟକ

# ଆଧୁନିକ ଓଡ଼ିଆ ସାହିତ୍ୟ : ଉନ୍ମେଷ ପର୍ବ

(ଉନ୍ନବିଂଶ ଶତାବ୍ଦୀ ଓଡ଼ିଆ ମିଶନାରୀ ସାହିତ୍ୟର ଇତିହାସ)

ପ୍ରକଳ୍ପ ଯୋଜନା :

**କଳିଙ୍ଗ ଗବେଷଣା ଏକାଡେମୀ**

**କଟକ**

ନିବନ୍ଧ ପ୍ରସ୍ତୁତି :

**ଡକ୍ଟର ସ୍ମରଣ କୁମାର ନାୟକ**

ଅଧକ୍ଷ, ଜ୍ଞାନଭାରତୀ ବିଜ୍ଞାନ ଓ ପ୍ରଯୁକ୍ତି ମହାବିଦ୍ୟାଳୟ

ମଞ୍ଚେଶ୍ୱର, ଭୁବନେଶ୍ୱର, ଓଡ଼ିଶା

**କେ. କେ. ମିଶ୍ର ଏଣ୍ଡ୍ କୋ.**

ବାଙ୍କାବଜାର, କଟକ – ୨

ଆଧୁନିକ ଓଡ଼ିଆ ସାହିତ୍ୟ : ଉନ୍ମେଷ ପର୍ବ

*ପ୍ରକାଶକ :*

**କେ. କେ. ମିଶ୍ର ଏଣ୍ଡ୍ କୋ.**

ବାଙ୍କାବଜାର, କଟକ – ୭୫୩୦୦୨

*ପ୍ରକଳ୍ପ ଯୋଜନା :*

**କଳିଙ୍ଗ ଗବେଷଣା ଏକାଡେମୀ, କଟକ**

*ପ୍ରକଳ୍ପ ପ୍ରସ୍ତୁତି :*

**ଡକ୍ଟର ସ୍ମରଣ କୁମାର ନାୟକ**

ଅଧ୍ୟକ୍ଷ, ଜ୍ଞାନଭାରତୀ ବିଜ୍ଞାନ ଓ ପ୍ରଯୁକ୍ତି ମହାବିଦ୍ୟାଳୟ

ମଞ୍ଚେଶ୍ୱର, ଭୁବନେଶ୍ୱର, ଓଡ଼ିଶା

*ପ୍ରଥମ ପ୍ରକାଶନ : ୨୦୧୨*

ମୂଲ୍ୟ : ଟ. ୮୦.୦୦ ମାତ୍ର

**ADHUNIKA ODIA SAHITYA : UNMESA PARBA**

*Published by :*

**K. K. Mishra & Co.**

Banka Bazar, Cuttack – 753002

*Project Planning :*

**Kalinga Research Academy, Cuttack**

*Project Prepared by :*

**Dr. Smaran Kumar Nayak**

*1st Published in : 2012*

***Price :*** **₹. 80.00 Only**

# ଉତ୍ସର୍ଗ

ଡକ୍ଟର ଗଗନେନ୍ଦ୍ରନାଥ ଦାଶଙ୍କୁ
ଭକ୍ତି ଓ ସମ୍ମାନର ସହିତ ସମର୍ପିତ ।

ଆପଣ ମୋର ଶିକ୍ଷାଗୁରୁ ଓ ଦୀକ୍ଷାଗୁରୁ । ଗବେଷଣାର ନୂତନ ଦ୍ୱାର ମୋ ସମ୍ମୁଖରେ ଆପଣ ଖୋଲିଥିଲେ, ନିରପେକ୍ଷ ଗବେଷଣାର ଦୀକ୍ଷା ଦେଇଥିଲେ । ଆପଣ ଓଡ଼ିଆ ଗବେଷଣା ସାହିତ୍ୟ ରାଜ୍ୟରେ ଜଣେ ପ୍ରଚଣ୍ଡ ମାର୍ତ୍ତଣ୍ଡ, ଆପଣଙ୍କ ସମ୍ମୁଖରେ ମୁଁ କ୍ଷଣପ୍ରଭା ଖଦ୍ୟୋତ ମାତ୍ର । ସେ ଦିପ୍ତୀ ମୋହର ନାହିଁ । ତେଣୁ ଆପଣ ମୋ ଠାରୁ ଯାହା ଆଶା କରିଥିଲେ, ମୁଁ ତାହା ଆପଣଙ୍କୁ ଦେଇ ପାରିନାହିଁ, ସେଥିପାଇଁ ମୁଁ କ୍ଷମାପ୍ରାର୍ଥୀ ।

ସେଦିନ ମିଶନାରୀ ସାହିତ୍ୟ ପ୍ରତି ମୁଁ ଆପଣଙ୍କ ଯୋଗୁଁ ହିଁ ଆଗ୍ରହୀ ହୋଇଥିଲି । ଏଣୁ, ଏହି ପୁସ୍ତକଟିକୁ ମୁଁ ଆପଣଙ୍କ ହସ୍ତରେ ଦେଉଛି ।

ସ୍ମରଣ

# ସୂଚୀପତ୍ର


| | ବିଷୟ | ପୃଷ୍ଠା |
|---|---|---|
| | ଉପକ୍ରମଣିକା | ୫ |
| | ପ୍ରସ୍ତାବନା | ୧୩ |
| ୧. | ଓଡ଼ିଶାକୁ ଖ୍ରୀଷ୍ଟିୟାନ ମିଶନାରୀମାନଙ୍କର ଆଗମନ | ୧୯ |
| ୨. | ଓଡ଼ିଶାରେ ମିଶନ ପ୍ରେସ୍ ସ୍ଥାପନ ଓ ମିଶନାରୀ ସାହିତ୍ୟ ସୃଷ୍ଟିର ଅୟମାରମ୍ଭ | ୨୪ |
| ୩. | ଓଡ଼ିଆ ମିଶନାରୀ ସାହିତ୍ୟ – ୧ | ୪୫ |
| ୪. | ଓଡ଼ିଆ ମିଶନାରୀ ସାହିତ୍ୟ – ୨ | ୫୧ |
| ୫. | ଓଡ଼ିଆ ମିଶନାରୀ ସାହିତ୍ୟ ଓ ସମକାଳୀନ ସମାଜ | ୬୩ |
| ୬. | ଉନ୍ନବିଂଶ ଶତାବ୍ଦୀରେ ବଙ୍ଗଳା, ଅସମୀୟା ଓ ଓଡ଼ିଆ ମିଶନାରୀ ସାହିତ୍ୟ | ୭୩ |


## ପରିଶିଷ୍ଟ – କ


| | | |
|---|---|---|
| ୧. | ଓଡ଼ିଆରେ ମୁଦ୍ରିତ କେତେକ ମିଶନାରୀ ପୁସ୍ତକ ଓ ପ୍ରଚାରପତ୍ର : ଏକ ଦୃଷ୍ଟିପାତ | ୮୫ |
| ୨. | ସଂସ୍କୃତ ଭାଷାରେ ପ୍ରକାଶିତ ମିଶନାରୀ ସାହିତ୍ୟ | ୧୦୨ |
| ୩. | ଓଡ଼ିଆ ବଙ୍ଗଳା ଆସାମୀ ଭାଷାରେ ପ୍ରକାଶିତ ଈଶ୍ୱରଙ୍କ ପ୍ରାର୍ଥନା | ୧୦୪ |
| ୪. | ଓଡ଼ିଆ ମିଶନାରୀ ସାହିତ୍ୟ ସମ୍ପର୍କରେ କେତେକ ଭ୍ରମଧାରଣା | ୨୦୫ |


## ପରିଶିଷ୍ଟ – ଖ


| | | |
|---|---|---|
| ୧. | The Serampore Press and the Orissa Mission (No.3) | ୧୧୦ |
| ୨. | ଓଡ଼ିଆ ଟ୍ରାକ୍ଟ୍ ସମ୍ବନ୍ଧୀୟ ବିଭିନ୍ନ ରିପୋର୍ଟ | ୧୨୦ |
| ୩. | ଉପାଦାନ ପଞ୍ଜିକା | ୧୫୦ |
| ୪. | ସହାୟକ ଗ୍ରନ୍ଥସୂଚୀ | ୧୫୨ |




# ଉପକ୍ରମଣିକା

ଓଡ଼ିଶା ଇତିହାସର ଅବହେଳିତ ଦିଗ 'ଖ୍ରୀଷ୍ଟିୟାନ ମିଶନାରୀମାନଙ୍କର ଇତିହାସ' ସମ୍ପର୍କରେ ଆଲୋଚନା କରିବାର ଅନ୍ୟତମ କାରଣ ହେଉଛି କଟକ ଖ୍ରୀଷ୍ଟିୟାନ ସମାଜର ଏଥି ପ୍ରତି ହେୟଜ୍ଞାନ ମନୋବୃତ୍ତି । ପ୍ରଥମେ ୨୦୦୦ ମସିହାରେ କଟକସ୍ଥିତ ଏକ ବାଳ ସଦନ (Children's Home)ରେ କାର୍ଯ୍ୟକରିବାର ସୁଯୋଗ ମିଳିବାରୁ କଟକରେ ସ୍ଥାପିତ ଖ୍ରୀଷ୍ଟିୟାନ ସଂସ୍ଥାମାନଙ୍କର ଅସଲ ସ୍ୱରୂପ ଜାଣିବାରେ ମୁଁ ସମର୍ଥ ହୋଇଥିଲି । ବାଳସଦନର ସମ୍ପାଦକ ମହୋଦୟ ସଦନର ସ୍ଥାପୟିତା (Founder)ଙ୍କୁ ବହିଷ୍କାର କରି ତାଙ୍କ ସ୍ୱହସ୍ତନିର୍ମିତ ବାଳସଦନକୁ ହାତେଇ ନେଇଥିଲେ ଏବଂ ସେଥିରୁ ପ୍ରଭୁତ ଅର୍ଥ ଉପାର୍ଜନ ମଧ୍ୟ କରୁଥିଲେ / କରୁଛନ୍ତି ମଧ୍ୟ । ବିଦେଶରୁ ଆସୁଥିବା ବାଳକମାନଙ୍କ ନିମନ୍ତେ ଅର୍ଥକୁ କି ପ୍ରକାରେ ବିନିଯୋଗ କରାଯାଉଥିଲା, ତାହାର ଯଥାର୍ଥ ଉଦାହରଣ ହେଉଛି, ଏ ଲେଖକ ସହିତ ଅନ୍ୟ ସମସ୍ତଙ୍କୁ ମଧ୍ୟାହ୍ନ ଭୋଜନରେ ଦିଆଯାଉଥିବା ଘୋଡ଼ାମୁହାଁ ପୋକ ମିଶ୍ରିତ ଭାତ । ବାଳସଦନର ଅନ୍ତେବାସୀମାନଙ୍କୁ ମଧ୍ୟ ଏହି ଅନ୍ନ ଭୋଜନ କରିବାକୁ ବାଧ୍ୟ କରାଯାଉଥିଲା । ପିଲାମାନଙ୍କ ଉନ୍ନତି ନିମନ୍ତେ ଆସୁଥିବା ଅର୍ଥରେ କ୍ରୟ କରାଯାଇଥିବା ଦାମୀ ଗାଡ଼ି ସମସ୍ତ ସମ୍ପାଦକଙ୍କ ବ୍ୟକ୍ତିଗତ ଅକ୍ତିଆରରେ ରହିଛି, ଏହି ଶୀତତାପନିୟନ୍ତିତ ଗାଡ଼ିରେ ପରିବାର ସହିତ ବୁଲିବାରେ ସମ୍ପାଦକ ମହୋଦୟ ସଦା ଅଭ୍ୟସ୍ତ । ବାଳସଦନର ପରିଚାଳନାରେ ତାଙ୍କର ଜନହିତକର ମନୋବୃତ୍ତି ନଥିଲା ବରଂ ଥିଲା ବାଳସଦନର ଅନ୍ତେବାସୀମାନଙ୍କର ଅର୍ଥ ଅପହରଣ କରିବାର ମନୋବୃତ୍ତି ।

ଏହାର ପ୍ରାୟ ଛ'ଅ ବର୍ଷ ପରେ ମୁଁ ଯୋଗଦେଲି କଟକର ଆଉ ଏକ ପୁରାତନ ଖ୍ରୀଷ୍ଟିୟାନ ଅନୁଷ୍ଠାନ ୱାଇ.ଏମ୍.ସି.ଏରେ । କଟକ ୱାଇ.ଏମ୍.ସି.ଏ ହେଉଛି ପୂର୍ବ ଭାରତର ଦ୍ୱିତୀୟ ପୁରାତନ ୱାଇ.ଏମ୍.ସି.ଏ । କଲିକତା ପ୍ରଥମ ଓ କଟକ ଦ୍ୱିତୀୟ । ୨୦୦୬ ରୁ ୨୦୦୮ ମସିହା ପର୍ଯ୍ୟନ୍ତ ଏହି ଅନୁଷ୍ଠାନରେ କୌଣସି ଅସୁବିଧା ନଥିଲା । ୨୦୦୮ ମସିହାବେଳକୁ ଜଣେ ବରିଷ୍ଠ ସଭ୍ୟଙ୍କର ବ୍ୟବହାର ଦିନକୁ ଦିନ ବଳିପଡ଼ିଲା ।

କର୍ମଚାରୀମାନେ ଥିଲେ ତାଙ୍କ ଦୃଷ୍ଟିରେ ଅତ୍ୟନ୍ତ ହୀନ ଓ ନିମ୍ନ । ତାଙ୍କୁ ସହଯୋଗ କଲେ ଆଉ ଦୁଇ ଜଣ ସଭ୍ୟ ।

ଅନୁଷ୍ଠାନର ସ୍ଥାପନା/ପ୍ରତିଷ୍ଠା ଦିବସ ଅର୍ଥାତ୍ Foundation Day ଦିନ ଅନୁଷ୍ଠାନ ସାଧାରଣତଃ ବନ୍ଦ ରହୁଥିଲା, କିନ୍ତୁ ମୁଁ ଅନୁଭବ କଲି ଯେ, ଏହି ଦିନ କିଛି ନା କିଛି କାର୍ଯ୍ୟକ୍ରମ କରାଯାଇ ଅନ୍ୟମାନଙ୍କୁ ଅନୁଷ୍ଠାନର ପ୍ରାଚୀନତା ଓ ଐତିହାସିକ ମୂଲ୍ୟ ସମ୍ପର୍କରେ ଜଣାଇବା ଉଚିତ୍ ହେବ । କାର୍ଯ୍ୟକ୍ରମର ଯୋଜନା କରାଗଲା, ଏହି ଅବସରରେ ଗୋଟିଏ ସଙ୍ଗୀତ କାର୍ଯ୍ୟକ୍ରମ ମଧ୍ୟ ରଖାଯାଇଥିଲା । କିନ୍ତୁ, ଠିକ୍ ସମୟରେ ସଙ୍ଗୀତ କାର୍ଯ୍ୟକ୍ରମର ଆୟୋଜକ ପ୍ରାୟ କିଛି ଟଙ୍କା ଖର୍ଚ୍ଚ ହେବାର ଜଣାଇବାରୁ ଏବଂ ସେ ହିଁ ସମୟରେ ଅନୁଷ୍ଠାନ ସେ ବ୍ୟୟ ଭାର ସମ୍ଭାଳିବାକୁ ଅକ୍ଷମ ଥିବାରୁ, ସମ୍ପ୍ରଦାୟର ଅନ୍ୟ କେତେକ ଗାୟକ ଗାୟିକାମାନଙ୍କ ସହିତ ଯୋଗାଯୋଗ କରାଗଲା । ଅନ୍ୟମାନଙ୍କ ମଧ୍ୟରେ କଟକ ଓଡ଼ିଆ ବ୍ୟାପଟିଷ୍ଟ ମଣ୍ଡଳୀର ଜଣେ ପାଳକ ମଧ୍ୟ ଥିଲେ । କାର୍ଯ୍ୟକ୍ରମ ଆରମ୍ଭ ହେବାକୁ ଆଉ ଅଳ୍ପ ସମୟ ବାକି ଅଛି ୱାଇ.ଏମ୍.ସି.ଏର ଉପରୋକ୍ତ ବରିଷ୍ଠ ସଭ୍ୟ ସଭା କକ୍ଷ ମଧ୍ୟକୁ ପଶିଆସି ଉକ୍ତ ପାଳକଙ୍କୁ ସେଠାରେ ଦେଖି ଅତ୍ୟନ୍ତ କ୍ଷୁବ୍ଧ ଭାବରେ ଗାଳିଗୁଲଜ କଲେ ଏବଂ କହିଲେ 'I can not tolerate that ......' (ପାଳକଙ୍କ ନାମ) । ଏହାପରେ ସଭ୍ୟଜଣକ ସେହିସ୍ଥାନ ପରିତ୍ୟାଗ କରି ଚାଲିଗଲେ ।

କାର୍ଯ୍ୟକ୍ରମ ସରିଗଲା, ବସିଲା Enquary Committee ମୋ ବିରୁଦ୍ଧରେ, ଅଭିଯୋଗ ଥିଲା, ମୁଁ ଉପରୋକ୍ତ ପାଳକଙ୍କୁ ଡାକି ବରିଷ୍ଠ ସଭ୍ୟ ଜଣଙ୍କୁ ଅପମାନ ଦେଇଛି । ଅଭିଯୋଗ ଆଣିଥିଲେ ବରିଷ୍ଠ ସଭ୍ୟଙ୍କୁ ସବୁକଥାରେ ସମର୍ଥନ କରୁଥିବା ଉପରୋକ୍ତ ଦୁଇ ଅନ୍ୟ ସଭ୍ୟ । Enquary Committee ଦ୍ୱାରା ମୁଁ ଦୋଷୀ ସାବ୍ୟସ୍ତ ହେଲି । ମନେମନେ ଭାବିଲି, ଅନୁଷ୍ଠାନର ଏହି ପବିତ୍ର ଦିବସଟିକୁ ପାଳନ କରିବା ଦିଗରେ ମୋହର ଉଦ୍ୟୋଗ ବୋଧହୁଏ ଏକ ଭୁଲ୍ ଥିଲା ।

ସେହିଦିନ Enquary Committeeରେ ଅନ୍ୟ ଏକ ଅଭିଯୋଗ ଅଣାଗଲା ଯେ, ମୁଁ ଦୁଇବର୍ଷ କାଳ ପ୍ରକଳ୍ପ ସଂଯୋଜକ ଭାବରେ ଦାୟିତ୍ୱ ଗ୍ରହଣ କରିଥିଲେ ମଧ୍ୟ କୌଣସି ପ୍ରକଳ୍ପ ଅନୁଷ୍ଠାନକୁ ଦେଇପାରିନାହିଁ । ଏ ପ୍ରସଙ୍ଗରେ ଅଫିସିଆଲ୍ ଚିଠି ଆସିଲା, କୈଫିୟତ୍ ଦିଅ । ମୁଁ ସମସ୍ତ ପ୍ରମାଣ ସହିତ ମୋହର ଉତ୍ତର ଦାଖଲ କଲି, ତାହା ଦେଖି ସମସ୍ତେ ଚୁପ୍ ରହିଲେ ଆଉ କୌଣସି ଯୁକ୍ତ ତର୍କ ହେଲା ନାହିଁ ? କାରଣ, ତାହାର ରହସ୍ୟ ଥିଲା ଅଲଗା । ଥାଉ, ସେ ବିଷୟରେ ଆଉ ଆଲୋଚନା ଏଠାରେ କରୁନାହିଁ ।

ଏହିପରି ଜୀବନର ବିଭିନ୍ନ ସମସ୍ୟା ଓ ପ୍ରତିକୂଳ ପରିସ୍ଥିତି ମଧ୍ୟ ଦେଇ ଗତି କଲାପରେ କଟକର ବିଭିନ୍ନ ଖ୍ରୀଷ୍ଟିଆନ ସଂସ୍ଥା ଓ ସଂସ୍ଥା କରିଥିବା ବ୍ୟକ୍ତିମାନଙ୍କ ଉପରୁ ମୋର ବିଶ୍ୱାସ ଉଠିଯାଇଛି । ଖ୍ରୀଷ୍ଟ, ଖ୍ରୀଷ୍ଟ ବିଶ୍ୱାସ, ଖ୍ରୀଷ୍ଟ ତତ୍ତ୍ୱ ଓ ଖ୍ରୀଷ୍ଟଙ୍କୁ ଅନୁସରଣ କରୁଥିବା ଏହି ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ତର ଅନେକ । ବାଇବଲର ଗୋଟିଏ ବାହ୍ୟ ଓ କ୍ଷୀଣ ପରିସର ମଧ୍ୟରେ ରହି ଏମାନେ ଭାବନ୍ତି, ସେମାନେ ସବୁ ଜାଣିଛନ୍ତି ଏବଂ ଜଣେ ଜଣେ ବିଶିଷ୍ଟ ଧର୍ମାଧିକାରୀ । କିନ୍ତୁ, ସେମାନେ ଭୁଲି ଯାଉଛନ୍ତି ଯେ ୨୦୦୮ ମସିହାରେ ଘଟିଥିବା କନ୍ଧମାଳରେ ସାମ୍ପ୍ରଦାୟିକ ଦଙ୍ଗା ନିମନ୍ତେ ଦାୟୀ କିଏ ?

ଉନ୍ନବିଂଶ ଶତାବ୍ଦୀରେ ମିଶନାରୀମାନେ ସବୁଠାରୁ ବିପଦପୂର୍ଣ୍ଣସ୍ଥାନ କନ୍ଧମାଳ *(କାରଣ ସେଠାରେ ନରବଳୀ ପ୍ରଚଳିତ ଥିଲା ।)* ରେ ଖ୍ରୀଷ୍ଟଧର୍ମ ପ୍ରଚାର କରିବା ସହିତ ନରବଳୀ ପ୍ରଥାର ଉଚ୍ଛେଦ କରିଥିଲେ । କଟକର ତଥାକଥିତ ଖ୍ରୀଷ୍ଟିୟାନମାନେ ବୌଦ୍ଧିକ ଚିନ୍ତାଧାରାଠାରୁ ଏମାନେ ସମ୍ପୂର୍ଣ୍ଣଭାବରେ ଦୂରରେ । ପ୍ରଶ୍ନ ପଚାରିବାକୁ ଏମାନେ ଭାବନ୍ତି ଧର୍ମଦ୍ରୋହ । ବାଇବଲରେ 'ଦ୍ୱିତୀୟ ବିବରଣୀ' ନାମରେ ଗୋଟିଏ ପୁସ୍ତକ ରହିଛି ଅର୍ଥାତ୍ ପ୍ରଥମ ବିବରଣୀ ଅଛି ବୋଲି ତ 'ଦ୍ୱିତୀୟ ବିବରଣୀ' ନାମକରଣ ହୋଇଛି, ଯଦି ଏ ପ୍ରଶ୍ନ କଟକ ଖ୍ରୀଷ୍ଟିୟାନ ସମାଜର ତଥାକଥିତ ଧର୍ମଯାଜକମାନଙ୍କୁ *(ଯେଉଁମାନେ ଗୋଟିଏ ଗୋଟିଏ ଧର୍ମସଂସ୍ଥାମାନ ବା ଖ୍ରୀଷ୍ଟ ବିକ୍ରୟ କେନ୍ଦ୍ରମାନ ଖୋଲି ବସିଛନ୍ତି ।)* ପଚରାଯିବ, ତେବେ ପ୍ରଶ୍ନକର୍ତ୍ତା ହେବେ ଧର୍ମଦ୍ରୋହୀ ।

ଦ୍ୱିତୀୟତଃ, ଆଉ ଗୋଟିଏ ପ୍ରସଙ୍ଗ ଏଠାରେ କହିରଖିବା ଉଚିତ ହେବ ମୋହର ପୂଜ୍ୟଗୁରୁ ଡକ୍ଟର ମହେଶ୍ୱର ମହାନ୍ତି ଯାହା ମୋତେ କହିଥିଲେ ତାହା ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଯେତେବେଳେ ଓଡ଼ିଶା ମିଶନ ପ୍ରେସ୍ ଭାଙ୍ଗିଗଲା, ପ୍ରେସ୍‌ରେ ମୁଦ୍ରିତ ସମସ୍ତ ପୁସ୍ତକ, (ଯାହା ମୁଦ୍ରିତ ହେଲାପରେ ଗୋଟିଏ ଗୋଟିଏ କପି ପ୍ରେସ୍ ଅଫିସ୍‌ରେ ଥିଲା), ସେସବୁ ଓଡ଼ିଶା ସାହିତ୍ୟ ସଦନକୁ ଦେଇ ଦିଆଯାଇଥିଲା । ଡକ୍ଟର ମହେଶ୍ୱର ମହାନ୍ତି ତାହାର ସୂଚନା ପାଇ ଓଡ଼ିଶା ସାହିତ୍ୟ ସଦନକୁ ଯାଇ ବୁଝିଲେ ଯେ ଓଡ଼ିଶା ମିଶନ ପ୍ରେସ୍‌ରୁ ଯାହା ପୁସ୍ତକ ଆସିଥିଲା, ସେସବୁ ଓଡ଼ିଶା ସାହିତ୍ୟ ସଦନର ବାରଣ୍ଡାରେ ରଖି ଦିଆଯାଇଥିଲା, ଯିଏ ଯାହା ପାରିଛନ୍ତି ନେଇଛନ୍ତି । ମୁଁ ମୋର ପୂର୍ବ ପୁସ୍ତକରେ ଯାହା କହିଛି ଯେ, କଟକ ଖ୍ରୀଷ୍ଟିୟାନ ସମ୍ପ୍ରଦାୟର ନେତୃମାନ୍ୟ ବ୍ୟକ୍ତି ବିଶେଷ କୌଣସି ବୌଦ୍ଧିକ ଆଲୋଚନାର ଧାର ଧରନ୍ତିନି କି ନିଜର ଅତୀତ ସମ୍ପର୍କରେ ଜାଣିବା ପାଇଁ ତାଙ୍କର ଆଗ୍ରହ ମଧ୍ୟ ନାହିଁ ।

ତୃତୀୟତଃ, ସଟନଙ୍କ ପୁସ୍ତକ ପ୍ରସ୍ତୁତ କରୁଥିବା ସମୟରେ ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକର ଓଡ଼ିଆ ବିଭାଗରେ ଅଧ୍ୟାପକ ପଦ ଖାଲି ହେଲା । ଏଥିନେଇ ଆବଶ୍ୟକୀୟ ସାକ୍ଷାତକାର (Interview) ନିମନ୍ତେ ବିଜ୍ଞାପନ ମଧ୍ୟ ପ୍ରକାଶିତ ହେଲା । ବହୁ ଆଗ୍ରହୀ ପ୍ରାର୍ଥୀଙ୍କ ମଧ୍ୟରୁ ମୁଁ ଅନ୍ୟତମ ଥିଲି । ଖ୍ରୀଷ୍ଟ ମହାବିଦ୍ୟାଳୟରେ ମୁଁ ଅଧ୍ୟୟନ କରିଛି, ବିଜ୍ଞ ଓ ଉଦାର ଚିନ୍ତାସମ୍ପନ୍ନ ଅଧ୍ୟାପକମାନଙ୍କ *(ଶ୍ରୀଯୁକ୍ତ ଚନ୍ଦ୍ରଶେଖର ମହାପାତ୍ର, ଡକ୍ଟର ମହେଶ୍ୱର ମହାନ୍ତି ଓ ଡକ୍ଟର ପ୍ରାଣ ରଞ୍ଜନ ଦାସ)* ସଂସ୍ପର୍ଶରେ ଆସି ସେହି ସମୟରୁ ମୋର ଓଡ଼ିଆ ସାହିତ୍ୟର ଗବେଷଣା ପ୍ରତି ଆଗ୍ରହ । ତେଣୁ ଆଗ୍ରହୀ ହୋଇ ମାନେଜିଂ କମିଟିର କେତେଜଣ ଖ୍ରୀଷ୍ଟିୟାନ ସଭ୍ୟଙ୍କୁ ଏ ସମ୍ପର୍କରେ ଜଣାଇଲି । ସଭ୍ୟମାନେ ଆନନ୍ଦର ସହିତ ସ୍ୱାଗତ କଲେ; ଆଶ୍ୱାସନା ଦେଲେ 'ଶତ ପ୍ରତିଶତ ତମେ ହିଁ ପାଇବ' । ମୋର ମଧ୍ୟ ଆନନ୍ଦର ସୀମା ନାହିଁ; ଯାହା ହେଉ ଏତେଦିନେ ଅଧ୍ୟାପକ ହେବାର ସ୍ୱପ୍ନ ସାର୍ଥକ ହେବ ।

ସମୟ ବିତି ଚାଲିଲା । ସମୟ ସ୍ରୋତରେ ଖ୍ରୀଷ୍ଟିୟାନ ସମ୍ପ୍ରଦାୟର ଉକ୍ତ ତଥାକଥିତ ନେତୃବୃନ୍ଦ (Members of Cuttack Christian Education Board)ଙ୍କର ଉକ୍ତ ପ୍ରତିଶ୍ରୁତି ପାଣିରେ ଗାରପରି ମିଳାଇଗଲା । ମୁଁ ମଧ୍ୟ ବାସ୍ତବତାକୁ ଫେରି ଆସି ଦେଖିଲି, ମୋ ହାତଟା ଖାଲି । ସମୟର ସାମୟିକ ଚମକରେ ମୋର ଅଜାଣତରେ ମନ ଭିତରେ ବସା ବାନ୍ଧି ରହିଥିବା ଆଶା ଓ ଆକାଂକ୍ଷାକୁ ମୋହରି ସମ୍ମୁଖରେ ଭାଙ୍ଗି ପଡ଼ିବାର ଦେଖିଲି । ସତେ ଯେପରି ସେମାନେ ମତେ ଉପହାସ କରୁଥିଲେ । ଏହି ସମୟରେ Cuttack Christian Education Boardର ଜଣେ ସଭ୍ୟ ମୋତେ ଡାକି ସ୍ପଷ୍ଟ ଶୁଣାଇ ଦେଲେ 'ମୁଁ ଦୁଃଖିତ, ତୁମେ ସେଠାରେ ଅଧ୍ୟାପକ ଚାକିରୀ ପାଇପାରିବ ନାହିଁ । ତୁମ ବୟସ ଏଥିପାଇଁ ବାଧକ । ହଁ, ଯଦି କହିବ, ତେବେ ଗୋଟାଏ Administrative Officer Post ଏବେ ଖୋଲାଯିବ, ସେଥିରେ ରଖିଦେଇପାରେ । ଅନ୍ୟ ସ୍ଥାନରୁ ବୁଝି ଜାଣିଲି, ଉପଯୁକ୍ତ ପ୍ରାର୍ଥୀ ହୋଇଥିଲେ, ବୟସ କେବେ ବାଧକ ହୋଇପାରିବ ନାହିଁ । ବୟସ କମ୍ କରିଦେଇ ହେବ । କିନ୍ତୁ, ମନ ମଧ୍ୟରେ ଯଦି ସାହାଯ୍ୟ କରିବାର ଇଚ୍ଛା ନାହିଁ, ତେବେ ସବୁ ନିୟମ ଦେଖାଯାଏ ।  ମୁଁ ପଚାରିଲି, ସେ Administrative Officer ନିମନ୍ତେ ଦରମା କେତେ ?  ସଭ୍ୟ ଜଣକ କହିଲେ ଦୁଇ ହଜାର ପାଞ୍ଚଶହଟଙ୍କା । ମୁଁ ବିସ୍ମିତ ହେଲି । ଏକେତ ଅଧ୍ୟାପକ ଚାକିରୀଟାଏ ଦେବେ ବୋଲି କହି ପଛରେ କଥା ବୁଲେଇଦେଲେ, ଏବେ ପୁଣି ନୂଆ ଚାକିରୀ, ତାହା ପୁଣି ଦୁଇ ହଜାର ପାଞ୍ଚଶହଟଙ୍କାରେ, ୱାଇ.ଏମ୍.ସି.ଏରେ ତାହାଠାରୁ ଯଥେଷ୍ଟ ଅଧିକ ପାଉଥିଲି, ସେଥିପାଇଁ ବ୍ୟସ୍ତ ନହୋଇ

ପୂର୍ବ ଚାକିରୀରେ ରହିଲି, ଏହାତ ସଂସାରର ନିୟମ, ଈଶ୍ୱରଙ୍କ ଉପରେ ବିଶ୍ୱାସ ନକରି, ତାଙ୍କୁ ପଛରେ ପକାଇ ଯେଉଁ ମଣିଷଟିକୁ ବିଶ୍ୱାସ କରିବ, ସେ ଠିକ୍ ସମୟରେ ପଛରୁ ଛୁରୀ ମାରିବ । ସେଦିନ ଥିଲା ୨ ଅକ୍ଟୋବର ୨୦୦୮ ମସିହା, ସମୟ ପାଖାପାଖି ଦିନ ବାରଟା । ଅଧ୍ୟାପକ ହେବାର ସ୍ୱପ୍ନ ଭାଙ୍ଗିଗଲା । ଏହିପରି ଅନେକ ଖ୍ରୀଷ୍ଟିଆନ୍ ସଂସ୍ଥା ଓ ସ୍ୱାର୍ଥାନ୍ଧ ବ୍ୟକ୍ତିମାନଙ୍କର ସ୍ୱେଚ୍ଛାକୃତ ପ୍ରତାରଣାରେ ପ୍ରତାରିତ ହେବାପରେ ମୋର ସ୍ୱାଭିମାନ ମୋତେ ବାଧ୍ୟ କରିଥିଲା ସେମାନଙ୍କଠାରୁ ଦୂରେଇଯିବାପାଇଁ । ସେମାନଙ୍କର ଦ୍ୱୈତ ମନୋବୃତ୍ତି ସମ୍ପନ୍ନ ଓ ଉଦ୍ଦେଶ୍ୟ ପ୍ରଣୋଦିତ ଚିକ୍କଣ କଥାରେ ଆବଦ୍ଧ ହୋଇ ନ ରହି ବରଂ, ସେମାନଙ୍କର ଅପାରଗ ପଣିଆକୁ ପଦାରେ ପକାଇବା ନିମନ୍ତେ ଚିନ୍ତା କଲି । ତାହା ପରଠାରୁ ମୁଁ ଆଗ୍ରହୀ ହେଲି ମିଶନାରୀମାନଙ୍କ ସମ୍ପର୍କରେ ବିଶେଷ ଅଧ୍ୟୟନ କରିବା ପାଇଁ ।

ଖ୍ରୀଷ୍ଟ ମହାବିଦ୍ୟାଳୟରେ ଅଧ୍ୟାପକ ହେବାର ସ୍ୱପ୍ନ ଭାଙ୍ଗିଲା ପରେ ମୁଁ ଚିନ୍ତା କଲି, ଏପରି କାହିଁକି ହେଲା, ମୁଁ କ'ଣ ଯୋଗ୍ୟ ନଥିଲି ? ଅନେକ ଚିନ୍ତା କରିବା ପରେ ମୁଁ ଜାଣି ପାରିଲି, ୨୦୦୬ ମସିହାରେ କଟକ ଓଡ଼ିଆ ବ୍ୟାପଟିଷ୍ଟ ମଣ୍ଡଳୀର ମୁଖ୍ୟ ପାଳକ ଆଚାର୍ଯ୍ୟ ପୂର୍ଣ୍ଣେନ୍ଦୁ ଶେଖର ଖଟୁଆଙ୍କର ପରଲୋକ ପରେ ମୁଁ ସୂତାହାଟ ଗ୍ରାମର କେତେଜଣ ଯୁବବନ୍ଧୁମାନଙ୍କ ସହାୟତାରେ ତାଙ୍କର ଏକ ସ୍ମୃତି ସଭା କରି ଏକ ସ୍ମରଣିକା ପ୍ରକାଶ କରାଇଥିଲି । ଯେଉଁମାନେ ତାଙ୍କର ବିରୋଧୀ ଥିଲେ, ସେମାନେ ପରବର୍ତ୍ତୀ ସମୟରେ ଖ୍ରୀଷ୍ଟ ମହାବିଦ୍ୟାଳୟର ଗଭର୍ଣ୍ଣିଙ୍ଗ୍ ବଡି ସଭ୍ୟ ଭାବରେ ରହିଲେ, ୨୦୦୬ ମସିହାରୁ ଆଚାର୍ଯ୍ୟଙ୍କର 'ସ୍ମୃତି ସଭା' ଓ 'ସ୍ମରଣିକା' ପ୍ରକାଶ କରି ମୁଁ ସେମାନଙ୍କର ବିଷଦୃଷ୍ଟିରେ ପଡ଼ିଥିଲି । ସେମାନେ ସୁଯୋଗ ଖୋଜୁଥିଲେ, ମୋର ଉପରେ ଦାଉ ସାଧିବା ପାଇଁ ଖ୍ରୀଷ୍ଟ ମହାବିଦ୍ୟାଳୟରେ ଅଧ୍ୟାପକ ନିମନ୍ତେ ଦରଖାସ୍ତକୁ କଳେବଳେ କୌଶଳେ ଖାରଜ କରି ସେମାନେ ତାଙ୍କ ଉଦ୍ଦେଶ୍ୟରେ ସଫଳ ମଧ୍ୟ ହୋଇଥିଲେ, ମୋ ଉପରେ ଦାଉ ସାଧିବା ନିମନ୍ତେ, ତେଣୁ ଏହା କରିବା ସେତେବେଳେ ସେମାନଙ୍କ ପକ୍ଷରେ ସହଜ ହୋଇପଡ଼ିଥିଲା ।

ସମୟ ପୁଣି ଗଡ଼ିଚାଲିଲା, ସେତେବେଳେ ମୁଁ ୱାଇ.ଏମ୍.ସି.ଏ.ରେ କାର୍ଯ୍ୟରତ । ଖ୍ରୀଷ୍ଟିୟାନ ସମ୍ପ୍ରଦାୟର ତଥାକଥିତ କେତେକ ନେତୃମନ୍ୟ ବ୍ୟକ୍ତି ସେଠାରେ ବୋର୍ଡ ମେମ୍ବର । ସେମାନଙ୍କ ମଧ୍ୟରୁ ଜଣେ ମୋତେ ଦିନେ କହିଲେ, "You can not do any thing in your life." ନୀରବ ରହିଲି । ମନେମନେ ସ୍ଥିର କଲି କୌଣସି ଖ୍ରୀଷ୍ଟିୟାନ ସଂସ୍ଥାରେ କାର୍ଯ୍ୟ କରିବି ନାହିଁ । ସମୟ ଓ ସୁଯୋଗ ଖୋଜି ସେଠାରୁ ବାହାରି ଆସିବା

ସମୟକୁ ଅପେକ୍ଷା କଲି । ସମୟ ଆସିଲା, ମୁଁ ଭୁବନେଶ୍ୱରସ୍ଥିତ 'ସେଣ୍ଟ ଜାଭିୟର୍ସ ବିଜ୍ଞାନ ଓ ପ୍ରଯୁକ୍ତି ମହାବିଦ୍ୟାଳୟ'ର ଓଡ଼ିଆ ଶିକ୍ଷା ଓ ସାହିତ୍ୟ ବିଭାଗର ଅଧ୍ୟାପକ ଭାବରେ ୨୦୦୯ ମସିହା ଅଗଷ୍ଟ ମାସ ୩୧ ତାରିଖରେ ଯୋଗ ଦେଲି । ଏତେଦିନେ ଅଧ୍ୟାପକ ହେବାର ସ୍ୱପ୍ନ ସାର୍ଥକ ହେଲା । ମହାବିଦ୍ୟାଳୟର ନିର୍ଦ୍ଦେଶକ ଶ୍ରୀଯୁକ୍ତ ପ୍ରଭୁ ଚରଣ ମହାନ୍ତି ଅତ୍ୟନ୍ତ ନିରହଂକାରୀ, ଉଦାର ଏବଂ ଭଦ୍ରବ୍ୟକ୍ତି । ସେଠାକାର ଅଧ୍ୟକ୍ଷଙ୍କର ଏକ ଦୀର୍ଘ କାଳୀନ ଅନୁପସ୍ଥିତିରେ ମୁଁ ଅଧ୍ୟକ୍ଷ ଦାୟିତ୍ୱ ଗ୍ରହଣ କରିଥିଲି । ପରବର୍ତ୍ତୀ ସମୟରେ ୨୦୧୧ ମସିହା ଭୁବନେଶ୍ୱରର ମଞ୍ଚେଶ୍ୱରସ୍ଥିତ ଜ୍ଞାନ ଭାରତୀ ବିଜ୍ଞାନ ଓ ପ୍ରଯୁକ୍ତି ମହାବିଦ୍ୟଳୟରେ ପୁନଶ୍ଚ ଅଧ୍ୟକ୍ଷ ଭାବରେ ଯୋଗଦେଲି । ମହାବିଦ୍ୟାଳୟର ଚେୟାରମ୍ୟାନ୍ ଇଞ୍ଜିନିୟର ଘନଶ୍ୟାମ ଶତପଥୀ ଓ ସମ୍ପାଦକ ଇଞ୍ଜିନିୟର ପ୍ରିତମ କୁମାର ଶତପଥୀ ଉତ୍ତମ ବ୍ୟକ୍ତିତ୍ୱର ଯଥାର୍ଥ ଉଦାହରଣ ।

କଟକ ଖ୍ରୀଷ୍ଟିୟାନ ସମ୍ପ୍ରଦାୟର ତଥାକଥିତ ନେତାମାନଙ୍କର ଦୁର୍ବବ୍ୟବହାର, ଆତ୍ମବଡିମା, ଅହଂକାର ଓ ଅର୍ଥ ସର୍ବସ୍ୱ ମନୋବୃତ୍ତିକୁ ଲକ୍ଷ୍ୟକରି ମୁଁ ନୀରବରେ ସେମାନଙ୍କଠାରୁ ବିଦାୟନେଇ କଲମ ଧରିଥିଲି କଟକ ଖ୍ରୀଷ୍ଟିୟାନ ସମ୍ପ୍ରଦାୟର ହେୟଜ୍ଞାନ ମନୋବୃତ୍ତି ସର୍ବସ୍ୱ ଉକ୍ତ ବ୍ୟକ୍ତିମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ପାଇଁ, ପ୍ରାତଃ ସ୍ମରଣୀୟ ମିଶନାରୀମାନଙ୍କର ଉନ୍ନତିମୂଳକ କାର୍ଯ୍ୟକୁ ପ୍ରାଚୀନ ପୁସ୍ତକ ଓ ପତ୍ର ପତ୍ରିକାର ଗର୍ଭରୁ ଉଦ୍ଧାର କରି ପାଠକମାନଙ୍କ ସମ୍ମୁଖକୁ ଆଣିବା ପାଇଁ । ସେହି ଅବଧାରଣାରୁ ସୃଷ୍ଟି ଏହି ଅନୁଶୀଳନ ।

ମୁଁ ପୂର୍ବରୁ କହିରଖିଛି ଯେ କଟକ ଖ୍ରୀଷ୍ଟିୟାନ ସମ୍ପ୍ରଦାୟ ମଧ୍ୟରେ ବୌଦ୍ଧିକ ଅନୁଶୀଳନର ଓ/ବା ଆଲୋଚନାର ଅଭାବରୁ ଏକ ମହାନ ସଂସ୍କୃତିର ଅବକ୍ଷୟ ଦେଖାଦେଇଛି । ସମାଜର ତଥାକଥିତ ନେତୃବୃନ୍ଦ ଆତ୍ମକନ୍ଦଳରେ ବ୍ୟସ୍ତ ଥିବାବେଳେ ଏହି ସଂସ୍କୃତି ଓ ଇତିହାସ ଧୀରେ ଧୀରେ କ୍ଷୟାଭିମୁଖୀ ହୋଉଛି, ତାହା ପ୍ରତି କାହାର ନଜର ନାହିଁ । ସମ୍ପ୍ରଦାୟରେ ବ୍ୟକ୍ତିମାନଙ୍କର ଆତ୍ମସଚେତନଶୀଳତାର ଯଥେଷ୍ଟ ଅଭାବ ଏଥିପାଇଁ ଗଭୀରଭାବରେ ଦାୟୀ ।

ହୁଏତ ଆମ୍ଭମାନଙ୍କ ମନରେ ପ୍ରଶ୍ନ ଜାଗ୍ରତ ହୋଇପାରେ ଯେ ସାମ୍ପ୍ରତିକ ପରିସ୍ଥିତିରେ ଖ୍ରୀଷ୍ଟିୟାନ ଅନୁଷ୍ଠାନମାନଙ୍କର ପରିସ୍ଥିତି/ଅବସ୍ଥା କ'ଣ ? ସମ୍ପ୍ରତି ଏହି ପ୍ରଶ୍ନ ଆଉ ଜଟିଳ ହୋଇନାହିଁ । ସମସ୍ତଙ୍କ ନିକଟରେ ସମାନ ଭାବରେ ପରିଦୃଷ୍ଟ । ଓଡ଼ିଶାରେ ମିଶନାରୀ କାର୍ଯ୍ୟ

ନିମନ୍ତେ *(ବିଶେଷ ଭାବରେ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳମାନଙ୍କରେ)* ବିଦେଶୀ ବେସରକାରୀ ଅନୁଷ୍ଠାନ ପ୍ରଚୁର ଅର୍ଥ ବ୍ୟୟ କରୁଛନ୍ତି । ଏହି ପ୍ରସଙ୍ଗରେ ଏଠାରେ ଗୋଟିଏ କଥା କହିରଖିବି ଯେ, ବିଦେଶରେ ବିଶେଷ ଭାବରେ ଆମେରିକା, ଇଂଲଣ୍ଡ, ଚୀନରେ ସ୍କୁଲ ଯାଉଥିବା ପିଲାମାନେ ଦୈନିକ ନିଜର ହାତ ଖର୍ଚ୍ଚପାଇଁ ଆଣୁଥିବା ଅର୍ଥକୁ ଖର୍ଚ୍ଚ ନକରି ଭାରତରେ ଗରୀବ ଶିଶୁମାନଙ୍କର ବିକାଶ ନିମନ୍ତେ ପ୍ରେରଣ କରୁଥିବାର ନଜିର ଅଛି । ସେହି ଅର୍ଥକୁ ଏଠାକାର ଖ୍ରୀଷ୍ଟିୟାନ ଧର୍ମସଂସ୍ଥାମାନେ ବେଶ୍ ସହଜରେ ହାତେଇ/ହାତପଇଠକରି *(ବିଭିନ୍ନ ସଂସ୍ଥା ଗଠନ କରି)* ନିଜ ନିଜର ଜୀବନଧାରା / ଶୈଳୀ ସହିତ ଚାରିପୁରୁଷ ଯେପରି ଆରାମରେ ଗଢ଼ିପାରିବେ ସେ ବ୍ୟବସ୍ଥା କରିଚାଲିଛନ୍ତି ।

ଏହାହିଁ ପାର୍ଥକ୍ୟ ୧୯ଶ ଶତାବ୍ଦୀରେ ବିଦେଶରୁ ଆଗତ ମିଶନାରୀ ଓ ବର୍ତ୍ତମାନର ଦେଶୀୟ ମିଶନାରୀମାନଙ୍କ ମଧ୍ୟରେ । ଖ୍ରୀଷ୍ଟଧର୍ମର ପ୍ରଚାର ଓ ପ୍ରସାର ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲେ ମଧ୍ୟ ସେମାନଙ୍କର ସମାଜପ୍ରତି ଅବଦାନ ଯଥେଷ୍ଟରୁ ଯଥେଷ୍ଟ । ସେହି ଦୃଷ୍ଟିରୁ ଏହି ମିଶନାରୀମାନଙ୍କର ବିକଳ୍ପ କୌଣସିହେଁ ଏହି ଦେଶୀୟ ମିଶନାରୀ ମାନେ ହୋଇପାରିବେ ନାହିଁ । ସେ ଦିନର ବିଦେଶୀ ମିଶନାରୀମାନଙ୍କଠାରୁ ଯଥେଷ୍ଟ ଅଧିକ ଉନ୍ନତ ଜୀବନଶୈଳୀ ବିତାଉଥିବା ଏହି ତଥାକଥିତ ଦେଶୀୟ ମିଶନାରୀମାନଙ୍କର ଖ୍ରୀଷ୍ଟଧର୍ମର ବିକାଶ ଓ ବିସ୍ତୃତି ଦୂରେ ଥାଉ ସାଧାରଣ ଜନତାଙ୍କ ଉନ୍ନତି ନିମନ୍ତେ କୌଣସି ଅବଦାନ ନାହିଁ । ଯେଉଁ ପୃଷ୍ଠଭୂମି ଉପରେ ଦଣ୍ଡାୟମାନ ହୋଇ ଓ ଯେଉଁ ପୃଷ୍ଠଭୂମି ନିମନ୍ତେ ଦେଶୀୟ ମିଶନାରୀମାନେ ବିଳାସ ବ୍ୟସନକୁ ମୁଖ୍ୟ ଆଧାର କରି ନେଇଛନ୍ତି; ସେହି ପୃଷ୍ଠଭୂମି ୧୯ଶ ଶତକର ମିଶନାରୀମାନଙ୍କର ଆଦର୍ଶର ଫଳପ୍ରସୂ ।

ପୂର୍ବରୁ କହିରଖିଛି, କଟକ ଖ୍ରୀଷ୍ଟିୟାନ ସମ୍ପ୍ରଦାୟର ଖ୍ରୀଷ୍ଟିୟାନ ଧର୍ମ ଓ ସଂସ୍କୃତି ସମ୍ବଳିତ ଓଡ଼ିଶା ଇତିହାସର ଏକ ମହନୀୟ ଅଧ୍ୟାୟ କାଳର କରାଳ ଗତିରେ ଲୀନ । ତାକୁ ବୁଝିଲା ବେଳକୁ ଲେଡି ଗୁଡ ଆସି କହୁଣୀରେ ପହଞ୍ଚିସାରିଛି, କିଛି କହିବାର ଆଉ ନାହିଁ । ଏ ଲେଖକର 'ଆମୋଷ ସଟନଙ୍କ' ସମ୍ପର୍କୀତ ପୁସ୍ତକ (୧୦୨୦)ରେ ଏ ସମ୍ପର୍କରେ ବହୁଳ ଆଲୋଚନା କରିସାରିଛି । ବରଂ ଏଠାରେ କହିରଖିବା ଉଚିତ୍ ହେବଯେ ଆଧୁନିକ ଓଡ଼ିଶା ଓ ସାହିତ୍ୟର ଇତିହାସ ଯାହା ଉପରେ ଦଣ୍ଡାୟମାନ ହୋଇଛି ତାହା ୧୯ଶ ଶତକରେ ଖ୍ରୀଷ୍ଟିୟାନ ମିଶନାରୀମାନଙ୍କର ଓଡ଼ିଆ ଆଗମନର ଇତିହାସ ଓ କାର୍ଯ୍ୟାବଳୀର ଇତିହାସ ।

୨୦୧୦ ମସିହା ଡିସେମ୍ବର ମାସରେ ଭୁବନେଶ୍ୱରଠାରେ ଅନୁଷ୍ଠିତ ରାଜଧାନୀ ପୁସ୍ତକମେଳାରେ ପ୍ରକାଶିତ ହୁଏ, ମୋର ବହୁ ପ୍ରତୀକ୍ଷିତ **'ଊନବିଂଶ ଶତାବ୍ଦୀର ଓଡ଼ିଶାକୁ ମିଶନାରୀ ଡକ୍ଟର ଆମୋଷ ସଟନଙ୍କ ଦାନ'** ପୁସ୍ତକ । ଓଡ଼ିଶା ନିମନ୍ତେ ନିଜ ଜୀବନର ଅର୍ଦ୍ଧେକ ସମୟ ଦାନ କରିଥିବା ପ୍ରାତଃସ୍ମରଣୀୟ ମିଶନାରୀ ଡକ୍ଟର ଆମୋଷ ସଟନ (Amos Sutton)ଙ୍କ ସମ୍ପର୍କରେ ଏହା ଓଡ଼ିଆରେ ପ୍ରଥମ ପୁସ୍ତକ । କଳିଙ୍ଗ ଗବେଷଣା ଏକାଡେମୀର **'Baptist Missionary Research Bench'** *(BMRB)* ରେ ଗୃହୀତ ନିର୍ଦ୍ଧାରଣ ଅନୁସାରେ ପ୍ରଥମେ ଓଡ଼ିଶାରେ ଜେନେରାଲ୍ ବ୍ୟାପଟିଷ୍ଟ ମିଶନାରୀ ସୋସାଇଟୀର ମିଶନାରୀମାନଙ୍କ କାର୍ଯ୍ୟାବଳୀ ସମ୍ପର୍କରେ ନୂତନ ଗବେଷଣା ଆରମ୍ଭ କରାଗଲା । ଏହାର ଫଳଶ୍ରୁତି ସ୍ୱରୂପେ ପ୍ରଥମେ ପ୍ରକାଶିତ ହେଲା ମିଶନାରୀ ଡକ୍ଟର ଆମୋଷ ସଟନଙ୍କ ସମ୍ପର୍କୀତ ପୂର୍ବୋକ୍ତ ପୁସ୍ତକ ।



# ପ୍ରସ୍ତାବନା

ସମୟର ସ୍ରୋତରେ ଇତିହାସର ବହୁ ପୃଷ୍ଠା ନିଶ୍ଚିହ୍ନ । ଅଜ୍ଞାତ ହୋଇ ରହିଯାଇଛି ଅନେକ ତଥ୍ୟ; ସେସବୁ ଆଜି ବିସ୍ମୃତିର ଗର୍ଭରେ । ଅଲୋଡ଼ା, ଅଖୋଜା । ଉପଯୁକ୍ତ ସଂଗ୍ରହ ଅଭାବରୁ ଇତିହାସର ଅନେକ ଅଧ୍ୟାୟ ଅନ୍ଧକାରର ଗର୍ଭରେ ଅନ୍ତଗୋପନ କରିସାରିଛନ୍ତି ଚିରଦିନ ପାଇଁ । ପଙ୍କରେ ପାଦଦେଇ ପଙ୍କରେ ଧୀରେ ଧୀରେ ତଳକୁ ଗଲାପରି ଆଲୋଚନା ସଂଗ୍ରହ ଓ ସଂରକ୍ଷଣର ଅଭାବରୁ ଧୀରେ ଧୀରେ ସେଗୁଡ଼ିକ ବିସ୍ମୃତିର ଗର୍ଭରେ ଲୀନ ହେବାରେ ଲାଗିଛି । ତୁଳନାତ୍ମକ ଭାବରେ ଦେଖିବାକୁ ଗଲେ ଓଡ଼ିଆ ସାହିତ୍ୟର ଅନୁଶୀଳନରେ ଗବେଷକମାନେ ଯେତେଟା ପ୍ରାଚୀନ, ମଧ୍ୟଯୁଗୀୟ ଓ ସ୍ୱାଧୀନତା ପରବର୍ତ୍ତୀ ସାହିତ୍ୟ ଉପରେ ଗୁରୁତ୍ୱ ଦେଇ ଗବେଷଣାରେ ଆଗେଇ ଯାଇଛନ୍ତି, ଆଧୁନିକ ଓଡ଼ିଆ ସାହିତ୍ୟ (୧୮୦୦ - ୧୯୦୦) ପ୍ରତି ସେପ୍ରକାର ବିଶେଷ ଦୃଷ୍ଟି ଦେଇ ନାହାନ୍ତି । ଏହାର କାରଣ ଉପଯୁକ୍ତ / ଯଥାର୍ଥ ଉପାଦାନର ସଂଗ୍ରହ । ସେ ପରିଶ୍ରମରେ ପରିଶ୍ରମୀ ନ ହୋଇ ସହଜ ଲବ୍ଧ ଉପାଦାନ ମାଧ୍ୟମରେ ଗବେଷଣା ନାମରେ ଆବର୍ଜନା ସୃଷ୍ଟି କରିବାରେ ସେମାନେ ଆଗ୍ରହ ପ୍ରକାଶ କରିଛନ୍ତି । ଆଧୁନିକ ଓଡ଼ିଆ ସାହିତ୍ୟ ଅନୁଶୀଳନ ଓ ଗବେଷଣା କରିବାର ଯଥାର୍ଥ ମାର୍ଗ ଉନ୍ମୋଚନ କରିଥିଲେ ସ୍ୱର୍ଗତ ଡ଼କ୍ଟର ନଟବର ସାମନ୍ତରାୟ । ନିବନ୍ଧ କାହାକୁ କୁହାଯାଏ, ତାହାର ଜ୍ୱଳନ୍ତ ଉଦାହରଣ ଡ଼କ୍ଟର ସାମନ୍ତରାୟଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩ ରୁ ୧୯୨୦)' ।

ଆଧୁନିକ ଓଡ଼ିଶାର ଇତିହାସ ଓ ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ ଏହି ଉଭୟ ବିଭାବର ଆଲୋଚନାରେ, ଆଲୋଚନାର ପରିସରକୁ ଆସେ କେତେଗୋଟି ବିଷୟ ।

(କ) ଇଂରେଜ/ବ୍ରିଟିଶମାନଙ୍କର ଓଡ଼ିଶା ଅଧିକାର,(ଖ) ଖ୍ରୀଷ୍ଟିୟାନ୍ ମିଶନାରୀମାନଙ୍କର ଓଡ଼ିଶା ଆଗମନ, (ଗ) ମୁଦ୍ରଣ ଶିଳ୍ପ ପ୍ରତିଷ୍ଠା, ଘ) ଓଡ଼ିଆ ପତ୍ରିକା ପ୍ରକାଶନ, (ଙ) ନ'ଅଙ୍କ ଦୁର୍ଭିକ୍ଷ, (ଚ) ପାଇକ ବିଦ୍ରୋହ, (ଛ) ଭାଷା ସୁରକ୍ଷା ଆନ୍ଦୋଳନ, (ଜ) ଆଧୁନିକ ଶିକ୍ଷାର ପ୍ରଚାର ଓ ପ୍ରସାର, (ଝ) ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ଓ (ଞ) ଆଧୁନିକ ଓଡ଼ିଆ ସାହିତ୍ୟର ସୃଷ୍ଟି ।

ଆଧୁନିକ ଯୁଗର ଏହି ବିଭାବଗୁଡ଼ିକୁ ଲକ୍ଷ୍ୟ କରାଯାଉ । ମିଶନାରୀମାନଙ୍କର ଓଡ଼ିଶା ଆଗମନପରଠାରୁ ( ୧୮୨୨ ) ଆଧୁନିକ ଓଡ଼ିଆ ସାହିତ୍ୟର ସୃଷ୍ଟି ପର୍ଯ୍ୟନ୍ତ *(ନ'ଅଙ୍କ ଦୁର୍ଭିକ୍ଷ, ଭାଷା ସୁରକ୍ଷା ଆନ୍ଦୋଳନ ଓ ପାଇକ ବିଦ୍ରୋହ ଆଦି ବିଷୟ / ଘଟଣା ବ୍ୟତୀତ)* ସମସ୍ତ ବିଷୟରେ ମିଶନାରୀମାନଙ୍କର ଅବଦାନ ରହିଛି । ଆଧୁନିକ ଓଡ଼ିଆ ସାହିତ୍ୟର ଆଦ୍ୟଭୂମି ଭାବରେ ମିଶନାରୀ ସାହିତ୍ୟ ଗୃହୀତ; କିନ୍ତୁ, ମିଶନାରୀ ସାହିତ୍ୟର ଉନ୍ମେଷ ଓ ଅଭିବୃଦ୍ଧି । ଇତିହାସ ସଙ୍କଳନ ଦିଗରେ ଚିନ୍ତାକଲେ ସ୍ୱତଃ ପ୍ରମାଣିତ ହୁଏ ଯେ ତାହା ଅବହେଳିତ ।

ମିଶନାରୀ ସାହିତ୍ୟପ୍ରତି ତଥା ମିଶନାରୀ ଇତିହାସପ୍ରତି ଜନମାନସରେ ଆଗ୍ରହ ସୃଷ୍ଟି ନ ହେବାର କାରଣ ଦୁଇଗୋଟି ବୋଲି ଅନୁମାନ କରାଯାଇପାରେ ।

(କ) ଧର୍ମଗତ ସୀମାବଦ୍ଧତା ଓ (ଖ) ମିଶନାରୀ ରେକର୍ଡ ବା ବିବରଣୀଗୁଡ଼ିକର ସହଜ ଅନୁପଲବ୍ଧତା

## କ. ଧର୍ମଗତ ସୀମାବଦ୍ଧତା :

ଓଡ଼ିଶାର ଜାତୀୟ ଦେବତା ଜଗନ୍ନାଥଙ୍କର ପ୍ରତି ଶ୍ରଦ୍ଧା ଓ ଭକ୍ତିର ପ୍ରାବଲ୍ୟ ଅନ୍ୟଧର୍ମ ଓ ସଂସ୍କୃତିର ଅନୁଶୀଳନରେ ଉଦାସୀନତାର କାରଣ । କେବଳ ମିଶନାରୀ ସାହିତ୍ୟ ବା ଇତିହାସ ନୁହେଁ । ଇସଲାମ୍, ବୌଦ୍ଧ, ଜୈନ ପ୍ରମୁଖ ଧର୍ମ ସଂସ୍କୃତି ସମ୍ପର୍କରେ ସେ ପ୍ରକାର କୌଣସି ଗବେଷଣା ବା ରଚନାଗତ ଉଦ୍ୟମ ପ୍ରାୟତଃ ପରିଦୃଷ୍ଟ ହୁଏ ନାହିଁ । ତେଣୁ ଏହି ଧର୍ମଗତ ସୀମାବଦ୍ଧତା ହିଁ ଅନ୍ୟ ଧର୍ମ ଓ ସଂସ୍କୃତିର ପ୍ରାମାଣିକ ଗବେଷଣା ଦିଗରେ ପ୍ରତିବନ୍ଧକତା ସୃଷ୍ଟି କରିଛି ।

## ଖ. ମିଶନାରୀ ରେକର୍ଡ ବା ବିବରଣୀ ସମୂହର ସହଜ ଅନୁପଲବ୍ଧତା :

ପୂର୍ବରୁ କୁହାଯାଇଛି ସଂଗ୍ରହ ଓ ସଂରକ୍ଷଣ ଅଭାବରୁ ଇତିହାସ ବିସ୍ମୃତିର ଗର୍ଭରେ ଲୀନ ହେବାକୁ ଲାଗିଛି । ମିଶନାରୀ ଇତିହାସ ଓ ସାହିତ୍ୟ ସମ୍ପର୍କରେ ଗବେଷଣା ଓ ଆଲୋଚନା କରିବାକୁ ଗଲାବେଳେ ଆବଶ୍ୟକୀୟ ଉପାଦାନର ଅନୁପଲବ୍ଧତା ଗବେଷଣା/ ଆଲୋଚନାରେ ଅନ୍ତରାୟ ସୃଷ୍ଟି କରେ । କୌଣସି ମିଶନାରୀ ରେକର୍ଡ / ବିବରଣୀ ସହଜରେ ଉପଲବ୍ଧ ନୁହେଁ । ଶ୍ରୀରାମପୁର ଓ ଲଣ୍ଡନ ବ୍ୟତୀତ ଅନ୍ୟ କୌଣସି ସ୍ଥାନରେ ଏସବୁ ମିଳିବା କଷ୍ଟକର । ସେଥିପାଇଁ ଓଡ଼ିଶାର ଗବେଷକମାନଙ୍କର ଆଗ୍ରହ ଏଥିପ୍ରତି ଅତି କମ୍ ।

ବିଶେଷ ଭାବରେ ମିଶନାରୀ ସାହିତ୍ୟ ସମ୍ପର୍କରେ ଡ଼କ୍ଟର ନଟବର ସାମନ୍ତରାୟ, ଡ଼କ୍ଟର ଶ୍ରୀନିବାସ ମିଶ୍ର, ଡ଼କ୍ଟର ସୀତାରାମ ମହାପାତ୍ର, ଡ଼କ୍ଟର ଗଗନେନ୍ଦ୍ରନାଥ ଦାଶ ଏବଂ ଡ଼କ୍ଟର ମହେଶ୍ୱର ମହାନ୍ତି ଆଲୋଚନା କରିଛନ୍ତି ।

ଏହି ପ୍ରକଳ୍ପରେ / ନିବନ୍ଧରେ ୧୯ଶ ଶତାବ୍ଦୀରେ ପ୍ରକାଶିତ ବାଇବେଲ ଓ ଖ୍ରୀଷ୍ଟଧର୍ମ ସମ୍ପର୍କୀତ ବିଭିନ୍ନ ପ୍ରଚାରପତ୍ର, ପୁସ୍ତକ ଓ ପତ୍ରିକା ଇତିହାସର ଉନ୍ମେଷ ଓ ଉତ୍ତରଣ/ ବିକାଶଧାରା ସମ୍ପର୍କରେ ଏକ ଧାରଣାମୂଳକ ଆଲୋଚନା କରାଯାଇଛି । ନିବନ୍ଧଟିକୁ ଉପକ୍ରମଣିକା ଓ ଉପସଂହାର ବ୍ୟତୀତ ଛ'ଭାଗରେ ବିଭକ୍ତ କରାଯାଇଛି ।

- ଓଡ଼ିଶାକୁ ଖ୍ରୀଷ୍ଟିୟାନ ମିଶନାରୀମାନଙ୍କର ଆଗମନର ଇତିହାସ ।
- ଓଡ଼ିଶା ମିଶନ ପ୍ରେସ୍ ସ୍ଥାପନର ଇତିହାସ ।
- ଓଡ଼ିଆ ମିଶନାରୀ ସାହିତ୍ୟ - ୧ *(ପବିତ୍ର ବାଇବେଲର ଓଡ଼ିଆ ଅନୁବାଦ ଓ ପ୍ରକାଶନ)*
- ଓଡ଼ିଆ ମିଶନାରୀ ସାହିତ୍ୟ - ୨ *(ଉନବିଂଶ ଶତାବ୍ଦୀରେ ପ୍ରକାଶିତ ମିଶନାରୀ ପ୍ରଚାରପତ୍ର ଓ ପୁସ୍ତକାବଳୀ)*
- ଓଡ଼ିଆ ମିଶନାରୀ ସାହିତ୍ୟର ସମକାଳୀନ ସମାଜ ଉପରେ ପ୍ରଭାବ ଓ ଫଳାଫଳ ।
- ଉନ୍ନବିଂଶ ଶତାବ୍ଦୀରେ ବଙ୍ଗଳା, ଅସମୀୟା ମିଶନାରୀ ସାହିତ୍ୟ ।

ମୂଳ ଅଧ୍ୟାୟ ବ୍ୟତୀତ ନିବନ୍ଧର ଶେଷରେ ଦୁଇଗୋଟି 'ପରିଶିଷ୍ଟ' ସଂଯୋଜିତ ହୋଇଅଛି ।

ପରିଶିଷ୍ଟ-କରେ ଓଡ଼ିଆରେ ମୁଦ୍ରିତ କେତେକ ମିଶନାରୀ ପୁସ୍ତକ ଓ ପ୍ରଚାର ସମ୍ପର୍କରେ ଆଲୋଚନା କରାଯାଇଛି । ଏଥି ସହିତ ଓଡ଼ିଆ ମିଶନାରୀ ସାହିତ୍ୟ ସମ୍ପର୍କରେ କେତେକ ଭ୍ରମଧାରଣା ସମ୍ପର୍କରେ ମଧ୍ୟ ଆଲୋଚନା କରାଯାଇଛି ।

ପରିଶିଷ୍ଟ-ଖରେ The Serampore Press and the Orissa Mission (No.3). Dr. John Buckley, D.D. ଏବଂ ଓଡ଼ିଆ ପ୍ରଚାରପତ୍ର ସମ୍ପର୍କିତ ବିଭିନ୍ନ ବିବରଣୀକୁ ଦେଖାଇ ଦିଆଯାଇଛି ।

**ପ୍ରଥମ ଅଧ୍ୟାୟ :**

ନିବନ୍ଧର ପ୍ରଥମ ଅଧ୍ୟାୟରେ ଇଂଲଣ୍ଡରେ ବ୍ୟାପଟିଷ୍ଟ ମିଶନାରୀ ସୋସାଇଟି ଗଠନ, ଏହାପରେ ଭାରତୀୟମାନଙ୍କ ନିକଟରେ ଖ୍ରୀଷ୍ଟଧର୍ମ ପ୍ରଚାର କରିବା ନିମନ୍ତେ ଉଇଲିୟମ ୱାର୍ଡଙ୍କର ପତ୍ର, ମିଶନାରୀମାନଙ୍କର ଭାରତ ଉଦ୍ଦେଶ୍ୟରେ ଯାତ୍ରା ଏବଂ ଓଡ଼ିଶା ଆଗମନ ବିଷୟରେ ଆଲୋଚନା କରାଯାଇଛି । ବିଶେଷଭାବରେ ଏହା ନିବନ୍ଧର ଏକ ପୃଷ୍ଠଭୂମିକ ଅଧ୍ୟାୟ ଭାବରେ ଲିଖିତ / ଅବସ୍ଥାପିତ ହୋଇଛି ।

**ଦ୍ୱିତୀୟ ଅଧ୍ୟାୟ :**

ଏହି ଅଧ୍ୟାୟ ଓଡ଼ିଶା ମିଶନ ପ୍ରେସ୍ ସ୍ଥାପନର ଇତିହାସ ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ । ଓଡ଼ିଆ ମିଶନାରୀ ସାହିତ୍ୟର ସୃଷ୍ଟିର ଆଦି ଇତିହାସ ଭାବରେ ମିଶନ ପ୍ରେସର ଇତିହାସର

ଭୂମିକା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଏହି ଅଧ୍ୟାୟରେ 'ଓଡ଼ିଶାମିଶନ ପ୍ରେସ' ସ୍ଥାପନ ହେବାପୂର୍ବରୁ ଓଡ଼ିଆ ପ୍ରକାଶନ ୧୮୨୨ ମସିହା ପର୍ଯ୍ୟନ୍ତ ଓଡ଼ିଆରେ ପ୍ରକାଶିତ ପୁସ୍ତକାବଳୀ, ଶ୍ରୀରାମପୁର ମିଶନ ପ୍ରେସରେ ମୁଦ୍ରିତ ଓଡ଼ିଆ ପୁସ୍ତକ, ଓଡ଼ିଶାରେ ମିଶନ ପ୍ରେସ ସ୍ଥାପନର ଆଦ୍ୟ ଉଦ୍‌ଯୋଗ, ମିଶନାରୀ ଚାର୍ଲସ ଲେସୀଙ୍କ ଦ୍ୱାରା ଓଡ଼ିଶାକୁ ପ୍ରେସ୍ ଆନୟନ, ଓଡ଼ିଶାରେ ମିଶନ ପ୍ରେସ ସ୍ଥାପନ ଓ ଫ୍ରେଣ୍ଡ ଅଫ୍ ଇଣ୍ଡିଆର ମତ, ଓଡ଼ିଶାମିଶନ ପ୍ରେସ୍ ଓ ମିଶନାରୀ ଆମୋଷ ସଟନଙ୍କ ସମ୍ପର୍କରେ ଦି କମିଟୀ ଅଫ୍ ଦି କାଲ୍‌କାଟା ଅକ୍ସିଲାରୀ ବାଇବଲ ସୋସାଇଟୀର ମତ, ଓଡ଼ିଶାମିଶନ ପ୍ରେସରୁ ପ୍ରକାଶିତ ପୁସ୍ତକାବଳୀ ସମ୍ପର୍କୀତ ଆମୋଷ ସଟନଙ୍କ ବିବରଣୀ, ମିଶନ ପ୍ରେସ ଓ ଉଇଲିୟମ୍ ବ୍ରୁକସ୍, ଓଡ଼ିଶା ମିଶନ ପ୍ରେସରୁ ପ୍ରକାଶିତ ପୁସ୍ତକ ସମ୍ପର୍କରେ ଉଇଲିୟମ୍ ବ୍ରୁକସ୍‌ଙ୍କର ମତ ଓ ୧୯ଶ ଶତାବ୍ଦୀରେ ଓଡ଼ିଶା ମିଶନ ପ୍ରେସ୍‌ରେ ମୁଦ୍ରିତ ପୁସ୍ତକାବଳୀ ସମ୍ପର୍କରେ ଆଲୋଚନା କରାଯାଇଛି ।

**ତୃତୀୟ ଅଧ୍ୟାୟ :**

ଏହି ଅଧ୍ୟାୟରେ ଓଡ଼ିଆ ମିଶନାରୀ ସାହିତ୍ୟ (୧) ସମ୍ପର୍କରେ ଆଲୋଚନା କରାଯାଇଛି । ପବିତ୍ର ବାଇବେଲ ଓଡ଼ିଆରେ ଅନୁବାଦ ଓ ପ୍ରକାଶନ ସମ୍ପର୍କରେ ଏହି ଅଧ୍ୟାୟରେ ଆଲୋଚନାର ମୁଖ୍ୟ ପ୍ରସଙ୍ଗ । ପବିତ୍ର ବାଇବେଲର ଓଡ଼ିଆରେ ଅନୁବାଦ ଦୁଇସ୍ତରରେ ହୋଇଥିଲା । ପ୍ରଥମତଃ, ଶ୍ରୀରାମପୁର ମିଶନାରୀମାନଙ୍କ ଦ୍ୱାରା ଓ ଦ୍ୱିତୀୟତଃ, ଓଡ଼ିଶାରେ କର୍ମରତ ଜେନେରାଲ ବ୍ୟାପଟିଷ୍ଟ ମିଶନାରୀମାନଙ୍କ ଦ୍ୱାରା ।

ବାଇବେଲ ପ୍ରକାଶନ ଓ ବାଇବେଲ ସମ୍ପର୍କୀତ ପ୍ରଚାରପତ୍ରର ପ୍ରକାଶନ ଦୁଇଟି ପ୍ରସଙ୍ଗ ହୋଇଥିବାରୁ ଦୁଇଟି ଅଧ୍ୟାୟରେ ଏହା ଭିନ୍ନ ଭିନ୍ନ ଭାବରେ ଆଲୋଚନା କାରାଯାଇଛି ।

**ଚତୁର୍ଥ ଅଧ୍ୟାୟ :**

ଏହି ଅଧ୍ୟାୟରେ ଓଡ଼ିଆ ମିଶନାରୀ ସାହିତ୍ୟ (୨) ସମ୍ପର୍କରେ ଆଲୋଚନା କରାଯାଇଛି । ମିଶନାରୀ ସାହିତ୍ୟ କହିଲେ ବାଇବେଲ ସମ୍ପର୍କୀତ ଯେଉଁ ପ୍ରକାଶନ ଶ୍ରୀରାମପୁର ମିଶନାରୀ ବା ଜେନେରାଲ ବ୍ୟାପଟିଷ୍ଟ ମିଶନାରୀମାନଙ୍କ ଦ୍ୱାରା କରାଯାଇଥିଲା, ତାହା ସମ୍ପର୍କରେ ଆଲୋଚନା କରାଯାଇଛି । ଅର୍ଥାତ୍ ମିଶନାରୀ ପ୍ରଚାରପତ୍ର, ପୁସ୍ତକ ଓ ପତ୍ରିକା ସମ୍ପର୍କରେ ।

**ପଞ୍ଚମ ଅଧ୍ୟାୟ :**

ଏହି ଅଧ୍ୟାୟଟି ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ । ୧୮୨୨ ମସିହା ପୂର୍ବରୁ ଯେଉଁ ଯେଉଁ ମିଶନାରୀ ପ୍ରଚାର ପତ୍ର ଓ ପୁସ୍ତକର ବିତରଣ କରାଯାଇଥିଲା ବିଭିନ୍ନ ଅବସରରେ; ତାହାର

କି ପ୍ରକାର ପ୍ରଭାବ ପଡିଥିଲା ସମକାଳୀନ ସମାଜ ଉପରେ ସେହି ସମ୍ପର୍କରେ ଆଲୋଚନା କରାଯାଇଛି ।

ମିଶନାରୀ ପ୍ରଚାରପତ୍ର ଓ ପୁସ୍ତକର ବିତରଣ ଫଳରେ ଅନେକ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ତେଣୁ ମିଶନାରୀମାନେ ସେମାନଙ୍କର ପରିଶ୍ରମର ସୁଫଳ ବୋଲି ଗ୍ରହଣ କରିନେଇଥିଲେ । ଏଥିସହିତ ଡ଼କ୍ଟର ଆମୋଷ ସଟନଙ୍କ ମିଶନାରୀ ସାହିତ୍ୟକୁ ଦାନ ସମ୍ପର୍କରେ ଏହି ଅଧ୍ୟାୟରେ ଆଲୋଚନା କରାଯାଇଛି । ମିଶନାରୀ ସଟନଙ୍କୁ ଓଡ଼ିଶାର ଉଇଲିୟମ କେରୀ କହିଲେ ଅତ୍ୟୁକ୍ତି ହେବନାହିଁ । ଓଡ଼ିଶାରେ ଖ୍ରୀଷ୍ଟଧର୍ମର ବିକାଶ ଓ ବିସ୍ତୃତି ନିମନ୍ତେ ଡ଼କ୍ଟର ସଟନଙ୍କର ବହୁଳ ଅବଦାନ ରହିଛି । ପବିତ୍ର ବାଇବଲର ଅନୁଦାନ ବ୍ୟତୀତ ସେ ବହୁ ମିଶନାରୀ ପ୍ରଚାର ପତ୍ରର ଅନୁବାଦ କରିଥିଲେ ।

**ଷଷ୍ଠ ଅଧ୍ୟାୟ :**

ଷଷ୍ଠ ଅଧ୍ୟାୟଟିରେ ଉନ୍ନବିଂଶ ଶତାବ୍ଦୀରେ ବଙ୍ଗଳା, ଅସମୀୟା ମିଶନାରୀ ସାହିତ୍ୟ ସମ୍ପର୍କରେ ଆଲୋଚନା କରାଯାଇଛି । ଓଡ଼ିଆ ସମକାଳୀନ ବଙ୍ଗଳା ଓ ଓଡ଼ିଆ ମିଶନାରୀ ସାହିତ୍ୟର ରୂପରେଖ ଓ ସଂକ୍ଷିପ୍ତ ରୂପରେଖ ପ୍ରଦାନ କରାଯାଇଛି ।

ସେହିପରି 'ପରିଶିଷ୍ଟ-କ'ବା 'ଓଡ଼ିଆରେ ମୁଦ୍ରିତ କେତେକ ମିଶନାରୀ ପୁସ୍ତକ ଓ ପ୍ରଚାର ପତ୍ର: ଏକ ଦୃଷ୍ଟିପାତ' ର ଏହି ବିଭାଗରେ ଛ'ଗୋଟି ମିଶନାରୀ ସାହିତ୍ୟ ସମ୍ପର୍କରେ ଅଲୋଚନା କରାଯାଇଛି । ଯଥା: ସ୍ୱର୍ଗୀୟ ଯାତ୍ରୀର ବୃତ୍ତାନ୍ତ (ମିଶନାରୀ ଆମୋଷ ସଟନଙ୍କ ଦ୍ୱାରା John Bunyanଙ୍କର 'Piligrims Progress'ର ଓଡିଆ ଅନୁବାଦ, ଜଗନ୍ନାଥ ପରୀକ୍ଷା - ମୁକୁନ୍ଦ ଦାସ, ମିଶନାରୀ ପତ୍ରିକା ପ୍ରବୋଧ ଚନ୍ଦ୍ରିକା, ଶ୍ରୀ ଶ୍ରୀ ଗୁଣ୍ଡିଚା ଯାତ୍ରାର ମହାଶ୍ଚର୍ଯ୍ୟଫଳ ଓ ନିସ୍ତାର ରତ୍ନାକର । ସେଥିମଧ୍ୟରୁ ଶ୍ରୀ ଶ୍ରୀ ଗୁଣ୍ଡିଚା ଯାତ୍ରାର ମହାଶ୍ଚର୍ଯ୍ୟ ଫଳ ଓଡ଼ିଶା ମିଶନ ପ୍ରେସରେ ମୁଦ୍ରିତ ପ୍ରଥମ ପ୍ରଚାରପତ୍ର । ଏହି ଆଲୋଚନାରୁ ମିଶନାରୀମାନଙ୍କର ମିଶନାରୀ ସାହିତ୍ୟ ପ୍ରକାଶନର ଆଭିମୁଖ୍ୟ ସମ୍ପର୍କରେ ଧାରଣା କରିହେବ । ଏଥି ସହିତ ଆଲୋଚକମାନଙ୍କର କେତେକ ଭ୍ରମ ଧାରଣା (ମିଶନାରୀ ସାହିତ୍ୟ ସମ୍ପର୍କରେ)ର ଆଲୋଚନା କରାଯାଇଛି ।

'ପରିଶିଷ୍ଟ-ଖ'ରେ ଓଡ଼ିଶାରେ ମିଶନାରୀ ପୁସ୍ତକ ସଂକଳନ ଓ ପ୍ରକାଶନରେ ଶ୍ରୀରାମପୁର ପ୍ରେସର ଭୂମିକା ସମ୍ପର୍କିତ ଡ଼କ୍ଟର ଜନ୍ ବକ୍‌ଲେଙ୍କର ଏକ ପ୍ରବନ୍ଧର ୩ୟ ଭାଗ ପ୍ରଦାନ କରାଯାଇଛି । ଏଠାରେ ଅବଶ୍ୟ ସ୍ମରଣ ଯୋଗ୍ୟ ଯେ ଡ଼କ୍ଟର ସଟନଙ୍କ ପରେ ଡ଼କ୍ଟର ବକ୍‌ଲେଙ୍କର ଓଡ଼ିଶାରେ ମିଶନାରୀ କାର୍ଯ୍ୟର ଦାୟିତ୍ୱ ନେଇଥିଲେ ଓ ମିଶନାରୀ କାର୍ଯ୍ୟ ବିଶେଷ ଭାବରେ ବାଇବଲ ଅନୁବାଦ କାର୍ଯ୍ୟରେ ତାଙ୍କର ଅନେକ ଦାନ ରହିଛି । ଏହି ପ୍ରବନ୍ଧଟି ଅତ୍ୟନ୍ତ ମୂଲ୍ୟବାନ ହୋଇଥିବାରୁ ଏହାକୁ ଏହିସ୍ଥାନରେ ସ୍ଥାନିତ କରାଯାଇଛି ।

ପ୍ରବନ୍ଧଟି ତିନିଗୋଟି ଭାଗରେ ବିଭକ୍ତ ହୋଇ ପ୍ରକାଶିତ ହୋଇଥିଲା । କେବଳ ତୃତୀୟ ଭାଗରେ ଶ୍ରୀରାମପୁର ମିଶନ ଓ ଓଡ଼ିଆ ମିଶନାରୀ ସାହିତ୍ୟ ସମ୍ପର୍କରେ ଆଲୋଚନା ହୋଇଥିବାରୁ ଏହି ଅଧ୍ୟାୟଟିକୁ ଆବଶ୍ୟକ ସ୍ଥାନରେ ସ୍ଥାପନ କରାଗଲା ।

ଏହା ସହିତ ଓଡ଼ିଆ ପ୍ରଚାର ପତ୍ର ସମ୍ପର୍କରେ ବିଭିନ୍ନ ରିପୋର୍ଟ/ବିବରଣୀକୁ ପ୍ରଦାନ କରାଯାଇଛି ।

ଯେତେବେଳେ ଆଧୁନିକ ଓଡ଼ିଆ ସାହିତ୍ୟ ସୃଷ୍ଟି ହୋଇନାହିଁ, ଶିକ୍ଷା ଯୋଜନା କରାଯାଇନାହିଁ, ବିଦ୍ୟାଳୟ ସ୍ଥାପିତ ହୋଇନାହିଁ, ସେହି ସମୟରେ ଓଡ଼ିଆ ମିଶନାରୀ ସାହିତ୍ୟଗୁଡ଼ିକର ପ୍ରସ୍ତୁତି, ମୁଦ୍ରଣ ଓ ପ୍ରକାଶନ ଯଥାର୍ଥରେ ଆଧୁନିକ ଓଡ଼ିଆ ସାହିତ୍ୟର ଉନ୍ମେଷର ପ୍ରଥମ ପର୍ଯ୍ୟାୟ ସୃଷ୍ଟି କରିଥିଲା କହିଲେ, ଅତ୍ୟୁକ୍ତି ହେବନାହିଁ । ରାଧାନାଥ, ଫକୀରମୋହନ, ରାମଶଙ୍କର ଯେଉଁମାନଙ୍କୁ ଆଜି ଆଧୁନିକ ଓଡ଼ିଆ ସାହିତ୍ୟର ତୁଙ୍ଗନେତା ସ୍ରଷ୍ଟା ଭାବରେ ସିଂହାସନରୂଢ଼ କରାଯାଇଛି ସେମାନଙ୍କର ସାହିତ୍ୟ ବା ସୃଷ୍ଟି ଦଣ୍ଡାୟମାନ ହୋଇଛି ଏହି ମିଶନାରୀ ସାହିତ୍ୟର ପୃଷ୍ଠପୀଠିକା ଉପରେ ।

ପ୍ରକଳ୍ପଟିକୁ ସମାପ୍ତ କରିବା ଦିଗରେ ଯଥେଷ୍ଟ ସମୟ ଲାଗିଛି । ସଂଗ୍ରହ ଓ ସଂଯୋଜନା କରିବା ନିମନ୍ତେ ମଧ୍ୟ ସମୟ ଲାଗିଛି । ବ୍ୟବସାୟିକ ମନୋବୃତ୍ତି ନେଇ କାର୍ଯ୍ୟ କରିଥିଲେ ହୁଏତ ଚଞ୍ଚଳ କାର୍ଯ୍ୟଟି ସରିଯାଇଥାଆନ୍ତି । କିନ୍ତୁ, ବିବେକ ଏହା କରିବାକୁ ଦେଇନାହିଁ । ପଦେ ପଦେ ମନେପଡ଼ିଯାଉଛି ଡକ୍ଟର ନଟବର ସାମନ୍ତରାୟ, ଗଗନେନ୍ଦ୍ରନାଥ ଦାଶ ଏବଂ ଡକ୍ଟର ମହେଶ୍ୱର ମହାନ୍ତିଙ୍କ ସଦୃଶ ଗୁରୁମାନଙ୍କର ଉପଦେଶ – 'ସଂଗ୍ରହ ଓ ସଂଯୋଜନାରେ ନିର୍ଭୀକ, ସଚ୍ଚୋଟ ଓ ନିରପେକ୍ଷ ହେବା ଉଚିତ' । ତେଣୁ, ଏହି ନିୟମ ବାହାରକୁ ମୁଁ ଯାଇପାରିନାହିଁ । ଡକ୍ଟର ଦାଶ ଓ ଡକ୍ଟର ମହାନ୍ତିଙ୍କୁ ଏହି ଅବସରରେ ପ୍ରଣାମ ଜଣାଉଛି ।

ପୁସ୍ତକ ବିକ୍ରୟ ଯେତେବେଳେ ଖୁବ୍ କମ୍ ହୋଇଯାଇଛି, ସେହି ସମୟରେ ପ୍ରକାଶକ ବନ୍ଧୁ ଶୁଭବାବୁ ଏହିପରି ଗବେଷଣାତ୍ମକ ପୁସ୍ତକ ପ୍ରକାଶ କରିବାକୁ ସାହସୀ ହୋଇଛନ୍ତି ।

ପତ୍ନୀ ବିଶାଖାଙ୍କୁ ଏହି ସମୟରେ ଧନ୍ୟବାଦ ଦେଉଛି, ସଂସାର ଜଞ୍ଜାଳରୁ ମୋତେ ପ୍ରାୟତଃ ମୁକ୍ତ ରଖିଥିବାରୁ ମୁଁ ଏହି ପ୍ରକଳ୍ପଟିକୁ ସମାପ୍ତ କରି ପାରିଛି ।



# ଓଡ଼ିଶାକୁ ଖ୍ରୀଷ୍ଟିୟାନ ମିଶନାରୀମାନଙ୍କର ଆଗମନ

## ବ୍ରିଟିଶ ପ୍ରଶାସନଦ୍ୱାରା ମିଶନାରୀମାନଙ୍କ ଉପରେ ପ୍ରତିବନ୍ଧକତା :

୧୮୦୬ ମସିହାରେ ବ୍ରିଟିଶ ପ୍ରଶାସନ ମିଶନାରୀମାନଙ୍କ ଉପରେ ପ୍ରତିବନ୍ଧକ ସୃଷ୍ଟି କଲା ଯେ ସେମାନେ ଦେଶୀୟ/ଭାରତୀୟମାନଙ୍କ ନିକଟରେ ଧର୍ମପ୍ରଚାର କରିପାରିବେ ନାହିଁ । କିଅବା ସେମାନଙ୍କ ମଧ୍ୟରେ କୌଣସି ଧର୍ମୀୟ ପୁସ୍ତକ (ଖ୍ରୀଷ୍ଟଧର୍ମ ସମ୍ପର୍କୀତ) ବା ପ୍ରଚାରପତ୍ର ବିତରଣ କରିପାରିବେ ନାହିଁ । ଏହି ସମ୍ପର୍କରେ ସି. ବି. ଲୁଇସ୍ ଉଲ୍ଲେଖ କରିଛନ୍ତି:

"On the 26th of August, 1806, Carey was informed by a justice of the peace of the desire of the government that he would neither preach to the natives, nor distribute books or pamphlets among them. These were heavy tidings. With a full heart he returned to his colleagues late at night. Henry Martin, who was then lodging in the pagoda at Aldeen, was aroused by Marshman, and told the news. No wonder that sleep fled from him. It seemed as if all their hopes and prayers were doomed to disappointment. Still they went forward. Were they not the Lord's servants, and bound to do his bidding, though man should forbid?

At this juncture an event happened, which at first bore ominously on their future prospects: but which in the providence of God turned out rather to the furtherance of the gospel. A Bengali tract had been translated into Persian by a native, and printed without being first inspected by the missionaries. The translator had thought proper to stigmatize Mahomed as a "tyrant." and other the like epithets. A copy having been placed in the hands of an officer of government, it was taken up in a serious manner."

*(The Baptist Magazine - 1854, p. 118)*

ଏଠାରେ ଅବଶ୍ୟ ସ୍ମରଣଯୋଗ୍ୟ ଯେ ୧୮୧୩ ପୂର୍ବରୁ ମିଶନାରୀମାନଙ୍କର ଖ୍ରୀଷ୍ଟଧର୍ମ ପ୍ରଚାରରେ ସ୍ୱାତନ୍ତ୍ର୍ୟ ନଥିଲା । ଚାର୍ଲସ୍ ଗ୍ରାଣ୍ଟ୍ ଓ ଉଇଲିୟମ୍ ଉଇଲବରଫୋର୍ସଙ୍କ ଉଦ୍‌ଯୋଗ

ବଳରେ କମ୍ପାନୀର ୧୮୧୩ ଚାର୍ଟରରେ ମିଶନାରୀମାନେ ଭାରତରେ ସ୍ୱାଧୀନ ଭାବରେ ମିଶନାରୀ କାର୍ଯ୍ୟ କରିପାରିବେ ବୋଲି ଅନୁମତି ପାଇଲେ । ଏହା ପରଠାରୁ ମିଶନାରୀ କାର୍ଯ୍ୟ ଠିକ୍ ରୂପେ କରାଯାଇପାରିଥିଲା ।

ସେହିପରି ୧୮୧୮ ମସିହାରେ ରାଜପୁତାନାଠାରେ ଲାନ୍‌କାସ୍ଟାରିଆନ୍ ପ୍ରଣାଳୀରେ ଶିକ୍ଷା ପ୍ରବର୍ତ୍ତନ କରିବାକୁ ସ୍ଥିର କରାଯିବାରୁ ମିଶନାରୀ ଡକ୍ଟର ଉଇଲିୟମ କେରୀଙ୍କର ପୁତ୍ର ଜେ. କେରୀଙ୍କୁ ଗଭର୍ଣ୍ଣର ଜେନେରାଲ୍ (Governor General of Fort William, Earl of Moira) ଏହି କାର୍ଯ୍ୟ ନିମନ୍ତେ ଚୟନ କରିଥିଲେ । ପରବର୍ତ୍ତୀ ସମୟରେ ଜେ.କେରୀ କେତେକ ଖ୍ରୀଷ୍ଟିୟାନ ପୁସ୍ତକ (ଧର୍ମଶାସ୍ତ୍ର ସମ୍ବନ୍ଧୀୟ) ବିଦ୍ୟାଳୟରେ ପ୍ରଚଳନ କରାଇଥିଲେ । ମାତ୍ର, ତାହା ଆପତ୍ତିର କାରଣ ହୋଇଥିଲା ।

୧୮୨୨ ମସିହାରେ ଫୋର୍ଟ ଉଇଲିୟମ୍‌ରୁ ଜୁଲାଇ ପାଞ୍ଚ ତାରିଖରେ ଏକ ପତ୍ରରେ ସାର୍ ଡି. ଅକ୍‌ଟେରଲୋନୀଙ୍କୁ ଏ ବିଷୟରେ ଲେଖାଯାଇଥିଲା ।

"His Excllency the Governor General in council has percieved with much regret the highly in judicious and objectionable course persued by Mr. Çarey in intriducing the sacred books of scripture as school books in institutions of so recent a date and in such a state of society as that of Rajpootanah. Mr. Carey will recieve injunctions through his father, the reverend Dr. Carey, to discontinue the use in schools under the charge after christian Scriptures and all relegious tracts calculated to excite alarm as to our motives in the minds of the natives.

*(Selections from Educational Records - vol. I, H.Sharp, Calcutta, Page -6, Footnote)*

ତେଣୁ ମିଶନାରୀ ଓ ବ୍ରିଟିଶ ସରକାରଙ୍କର ୧୮୧୩ ପୂର୍ବରୁ ଏହି ପ୍ରକାର ସମ୍ପର୍କ ଥିଲା । ତେଣୁ ସାଧାରଣରେ ଯେଉଁ ପ୍ରଚଳିତ ଅଛି ଯେ, ବ୍ରିଟିଶ ପ୍ରଶାସନ ଖ୍ରୀଷ୍ଟଧର୍ମର ପ୍ରବର୍ତ୍ତକ ଥିଲେ, ସେ ଧାରଣା ବଦଳିଯିବା ଉଚିତ ।

## ଜେନେରାଲ ବ୍ୟାପଟିଷ୍ଟ ମିଶନାରୀ ସୋସାଇଟୀ ଗଠନ:

ବୁକାନନ୍ ଏବଂ ୱାର୍ଡ଼ଙ୍କର ସଂସ୍କାରମୂଳକ ଚିନ୍ତାଧାରା ଓ ପଦକ୍ଷେପର ବଳରେ ଓଡ଼ିଶାରେ କୁସଂସ୍କାର ପ୍ରଧାନ ଜୀବନଧାରା ପାଇଁ ଇଂଲଣ୍ଡ ମିଶନାରୀମାନଙ୍କ ମଧ୍ୟରେ (ଜେନେରାଲ ବ୍ୟାପଟିଷ୍ଟମାନଙ୍କ ମଧ୍ୟରେ)ଏକ ପ୍ରକାର ଚାଲେଣି ପଡ଼ିଲା ।୧୮୧୬ ସାଲ ଜୁନ୍ ମାସ ୨୬ ତାରିଖରେ ଆମେରିକାର ବୋଷ୍ଟନ (ଲିନ୍‌କନ୍‌ସେୟାର୍)ଠାରେ ଏକ ସାଧାରଣ ସଭା ଆହ୍ୱାନ କରାଯାଇ ସର୍ବସମ୍ମତିକ୍ରମେ ଏହି ନିର୍ଦ୍ଧାରଣ ଗ୍ରହଣ କରାଗଲା।ଯେ:-

"We highly approve of a General Baptist Foreign Mission, and heartily recommend it to the friends of this major immediately to form themselves in to a socially for the prosecution of this important object."

*(A History of the General baptist Mission, established in the province- James Peggs - 1846 - p.149.)*

ଏହି ସଭାରେ ଶ୍ରୀଯୁକ୍ତ ପାଇକ (ଡର୍ବି)ସମ୍ପାଦକ ଏବଂ ଶ୍ରୀଯୁକ୍ତ ସିଲ୍ (ନଟିଙ୍ଗହାମ୍) କୋଷାଧ୍ୟକ୍ଷ ଭାବରେ ଦାୟିତ୍ୱଗ୍ରହଣ କରିଥିଲେ । ଜେନେରାଲ ବ୍ୟାପଟିଷ୍ଟ ମିଶନ ଗଠନ'ର କାରଣ ସମ୍ପର୍କରେ ପେଗସ୍‌ଙ୍କର ଉକ୍ତ ପୁସ୍ତକରେ ଲେଖାଅଛି:-

"That desire spread further and wider, till it led to the formation of a General Baptist Mistionary Society; wnose object ii the spread of the glorious Go«pel of Christ among the heathen. Toe earliest business of this Society, it in conceived, must be the acquirement and diffusion of information on miuiorjary subjects; the awakening the conscience! of their fellow chrirt-ians to aid iu exertions; and the placing of themselves in a position to act when the providence of God shall call them into action : and it is for this Infant institution that we solicit support. When it object it considered, can any decline supporting it with all the talents and all the power they possess ? An eloquent fnend of the heathen world has justly said, "The cause of Missions is one that will sanctify every church, every house, every botoin in which it has a friend. It is a cause stamned with the seal of heaven, dyed in the blood of Christ, and impressed with the characters of eternity, The command of Jesus gave it birth; the providence of God has watched ite growth; the tgpnies of the cross ikiure its success: and the happiucu of countless millions through eternal ages, is the end it has In view."

*(do- page-150)*

## ଉଇଲିୟମ ୱାର୍ଡ଼ଙ୍କର ପତ୍ର:

ଜେନେରାଲ ବ୍ୟାପଟିଷ୍ଟ ମିଶନାରୀ ସୋସାଇଟୀର ଗଠନ ପରେ ସୋସାଇଟୀର ସମ୍ପାଦକ ରେଭ୍. ଜେ.ଏମ୍.ପାଇକ୍‌ଙ୍କ ନିକଟକୁ ୱାର୍ଡ଼ ଯେଉଁ ପତ୍ର ଲେଖିଥିଲେ, ସେଥିରେ

ୱାର୍ଡ଼ ଭାରତୀୟ ଦେଶୀୟମାନଙ୍କ ନିକଟରେ ଖ୍ରୀଷ୍ଟଧର୍ମର ପ୍ରଚାର ଓ ପ୍ରସାରକୁ ଅଧିକରୁ ଅଧିକ ଗୁରୁତ୍ୱ ଦେଇଥିଲେ । ପତ୍ରଟି ରେଭ୍. ଜେ.ଏମ୍.ପାଇକ୍‌ଙ୍କ ପାଇଁ ଏକ ଉତ୍ସାହର କାରଣ ହୋଇଥିଲା ।

*(Farewell Letters – William Ward – 1822 – p. 243-44)*

## ମିଶନାରୀମାନଙ୍କର ଭାରତ ଉଦ୍ଦେଶ୍ୟରେ ଯାତ୍ରା:

ପ୍ରଥମେ ଜେନେରାଲ ବ୍ୟାପଟିଷ୍ଟ ମିଶନାରୀ ସୋସାଇଟୀର କର୍ମକର୍ତ୍ତାଗଣ ରେଭ୍.ଉଇଲିୟମ ବାମ୍ପଟନ, *(ଆର୍ନ୍ମାଉଥସ୍ଥିତ ଜେନେରାଲ ବ୍ୟାପଟିଷ୍ଟ ଗୀର୍ଜାରେ ପାଳକ)* ଏବଂ ଜେମ୍ସ୍ ପେଗ୍ସ୍, *(ଜେନେରାଲ ବ୍ୟାପଟିଷ୍ଟ ଏକାଡେମୀର ଛାତ୍ର)* ଦୁଇଜଣଙ୍କୁ ଭାରତ ପ୍ରେରଣ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଥିଲେ ।

*(Narrative of the Orissa Mission – Amos Sutton – 1833; p.01-02).*

ମିଶନାରୀ କାର୍ଯ୍ୟ କରିବା ପୂର୍ବରୁ ପ୍ରାଚୀନମାନଙ୍କ ଦ୍ୱାରା ହସ୍ତାର୍ପଣ କରାଯାଇଥାଏ । ବାମ୍ପଟନ୍‌ଙ୍କର ହସ୍ତାର୍ପଣ କାର୍ଯ୍ୟ ଲୁଥବର୍ଗଠାରେ ୧୮୨୧ ସାଲ ମେ’ ମାସ ୧୫ ତାରିଖରେ କରାଯାଇଥିଲା ।ଏହାର ପରବର୍ତ୍ତୀ ସମୟରେ ପେଗ୍ସ୍‌ଙ୍କର ମଧ୍ୟ ହସ୍ତାର୍ପଣ କାର୍ଯ୍ୟ କରାଯାଇଥିଲା । ହସ୍ତାର୍ପଣ ପରେ ଜେନେରାଲ ବ୍ୟାପଟିଷ୍ଟ ମିଶନାରୀ ସୋସାଇଟୀ ପକ୍ଷରୁ ମିଶନାରୀମାନଙ୍କ ପ୍ରତି ଉଦ୍ଦିଷ୍ଟ ଏକ ଦୀର୍ଘ ନିର୍ଦ୍ଦେଶାବଳୀ ରେଭ୍. ପାଇକ୍ ପାଠ କରିଥିଲେ ।

*(Do - p.05-11)*

୧୮୨୧ ସାଲ ମେ’ମାସ ୨୮ ତାରିଖରେ ମିଶନାରୀ ଉଇଲିୟମ ବାମ୍ପଟନ୍, ଜେମ୍ସ୍ ପେଗ୍ସ, ଉଇଲିୟମ ୱାର୍ଡ଼, ଶ୍ରୀମତୀ ମାର୍ଶମାନ, ତାଙ୍କର ଏକ କନ୍ୟା ଏବଂ ଝିଆରୀ, ଶ୍ରୀଯୁକ୍ତ ଓ ଶ୍ରୀମତୀ ମ୍ୟାକ୍, କୁମାରୀ କୁକ୍ (ଯିଏକି ପରବର୍ତ୍ତୀ ସମୟରେ ଶ୍ରୀମତୀ ଉଇଲସନ ହେଲେ ।) ଭାରତ ଅଭିମୁଖେ ଯାତ୍ରା କଲେ । କୁମାରୀ କୁକ୍‌ଙ୍କ ସମ୍ପର୍କରେ ଡକ୍ଟର ଆମୋଷ ସଟନ କୁହନ୍ତି ଯେ: ‘Miss cook, a young lady going out to India for the purpose of attempting the education of native girls:’

*(Do- p.12)*

ସେମାନଙ୍କ ସହିତ ଦୁଇଜଣ ଭାରତୀୟ ଯୁବକ ମଧ୍ୟ ଥିଲେ, ଯେଉଁମାନେକି ଇଂଲଣ୍ଡରୁ ବିଦ୍ୟାଶିକ୍ଷା ସମାପନ ପୂର୍ବକ ଭାରତ ପ୍ରତ୍ୟାବର୍ତ୍ତନ କରୁଥିଲେ । ଜାହାଜକୁ କିଛି ସମୟ ଲକ୍ଷ୍ୟ କରି ମିଶନାରୀଦଳ ଜାହାଜର ଭୋଜନକକ୍ଷରେ ଏକତ୍ର ପ୍ରାର୍ଥନା ଉତ୍ସର୍ଗ

କଲେ । ଜାହାଜ ଯାତ୍ରା ଆରମ୍ଭ ହେଲା । ଜାହାଜରୁ ବାମ୍ପଟନ ଏକ ପତ୍ର ସମ୍ପାଦକଙ୍କ ନିକଟକୁ ପ୍ରେରଣ କରିଥିଲେ ।

*(Do- p.13-14).*

ସେହିପରି ଜେମ୍‌ସ୍ ପେଗ୍‌ସ ମଧ୍ୟ ମାଦେରାଠାରେ ପହଞ୍ଚି ଏକ ପତ୍ର ସମ୍ପାଦକଙ୍କ ନିକଟକୁ ପ୍ରେରଣ କରିଥିଲେ:

*(Do - p.15-16).*

ଏକ ସଫଳ ଜଳଯାତ୍ରା ପରେ ସେପ୍ଟେମ୍ବର ୨୪ ତାରିଖରେ ମାନ୍ଦ୍ରାସଠାରେ ଏହି ମିଶନାରୀ ଦଳ ପହଞ୍ଚିଲେ । ସେଠାରେ ପହଞ୍ଚିଲାପରେ ପୂର୍ବରୁ ଅବସ୍ଥାପିତ ଖ୍ରୀଷ୍ଟିୟାନ ମିଶନାରୀମାନେ ଏହି ମିଶନାରୀ ଦଳକୁ ସ୍ୱାଗତ କରିଥିଲେ । ସେଠାରେ କିଛିଦିନ ଅବସ୍ଥାନ କରିବା ପରେ ଅକ୍ଟୋବର ମାସ ୧୫ ତାରିଖରେ ସେମାନେ କଲିକତାରେ ପହଞ୍ଚିଲେ ।

କଲିକତାଠାରେ ଉପସ୍ଥିତ ହୋଇ ଉଇଲିୟମ କେରୀ, ମାର୍ଶମାନ ପ୍ରମୁଖ ବରିଷ୍ଠ ମିଶନାରୀମାନଙ୍କ ସହିତ ଆଲୋଚନାପୂର୍ବକ ଓଡ଼ିଶାକୁ ସେମାନଙ୍କର ମିଶନାରୀ କ୍ଷେତ୍ର ରୂପେ ନିର୍ବାଚନ କଲେ ଏବଂ ଭଡ଼ାସୂତ୍ରରେ ଏକ ନୌକା ନେଇ ଓଡ଼ିଶା ଉଦ୍ଦେଶ୍ୟରେ ଯାତ୍ରା ଆରମ୍ଭ କଲେ । ଏକ ଉଦ୍‌ଯୋଗପୂର୍ଣ୍ଣ ଜଳଯାତ୍ରା ପରେ ୧୮୨୨ ସାଲ ଫେବୃୟାରୀ ମାସ ୧୨ ତାରିଖରେ ପଟାମୁଣ୍ଡାଇଠାରେ ପହଞ୍ଚିଲେ । ସେହିଦିନଠାରୁ ଏହି ଦିନକୁ ଓଡ଼ିଶା ଇତିହାସରେ ଏକ ମହାନ ଦିବସ ରୂପେ ପରିଗଣିତ ।



# ଓଡ଼ିଶାରେ ମିଶନ ପ୍ରେସ୍ ସ୍ଥାପନ ଓ ମିଶନାରୀ ସାହିତ୍ୟ ସୃଷ୍ଟିର ଅୟମାରମ୍ଭ

କେତେକ ସୁପରିଚିତ ସଂସ୍କୃତି, ପରମ୍ପରା ଓ ପୁରୋଦୃଷ୍ଟିହୀନ ବ୍ୟକ୍ତିବିଶେଷଙ୍କ ଏକାନ୍ତ ବ୍ୟକ୍ତିଗତ ଚକ୍ରାନ୍ତର ଶୀକାର ହୋଇ ଓଡ଼ିଶାର ପ୍ରଥମ ମୁଦ୍ରଣ ଶିଳ୍ପ 'ଓଡ଼ିଶାମିଶନ ପ୍ରେସ୍' ଆଜି ଭୂଲୁଣ୍ଠିତ । ସମୟର ରଥ ଚକ୍ରତଳେ ନିକ୍ଷେପିତ ମିଶନାରୀ ବିବରଣୀରେ ଏହାର ଇତିହାସ ଏବେ ବି ଉଦ୍‌ଜୀବିତ । ପ୍ରଥମ ଦେଶୀୟ ପ୍ରେସ୍ 'କଟକ ପ୍ରିଣ୍ଟିଂ କମ୍ପାନୀ' ସ୍ଥାପନ ହେବା ପୂର୍ବରୁ 'ଓଡ଼ିଶାମିଶନ ପ୍ରେସ୍'ର ସ୍ଥାନ ଥିଲା ସ୍ୱତନ୍ତ୍ର । ଏହାର ଯଥାର୍ଥ ପ୍ରମାଣ ହେଉଛି ତତ୍କାଳୀନ ଓଡ଼ିଶା ମିଶନର ମିଶନାରୀ ବିବରଣୀ । ମିଶନାରୀ କାର୍ଯ୍ୟକଳାପ, ଓଡ଼ିଶାରେ ନବଶିକ୍ଷାର ଜନ୍ମ ଜାତକ ପ୍ରସ୍ତୁତି ତଥା ଆଧୁନିକ ଓଡ଼ିଆ ସାହିତ୍ୟର ସମ୍ଭାବନା ଓ ସଂକ୍ରମଣରେ ଓଡ଼ିଶା ମିଶନ ପ୍ରେସ୍‌ର ଭୂମିକା ଥିଲା ଅନନ୍ୟ ଓ ଅନବଦ୍ୟ । ଏହାର ଭୂଲୁଣ୍ଠନରେ କେବଳ ଓଡ଼ିଶାନୁହେଁ, ସାରା ଓଡ଼ିଶାର ଏକ ଅପୂରଣୀୟ କ୍ଷତି ଘଟିଛି ।

ଏହି ମିଶନ ପ୍ରେସ ସ୍ଥାନରେ ଏବେ କଟକ ଡାୟୋସିସ ଦ୍ୱାରା ସ୍ଥାପିତ 'ନିୟୁ ଷ୍ଟୁଆର୍ଟ ସ୍କୁଲ୍' ସ୍ଥାପନ କରାଯାଇଛି । ଏହାକୁ ଲାଗି ରହିଥିବା ଗଳି ଏବେବି 'ଛାପାଖାନା ଗଳି' ନାମରେ ପରିଚିତ । ସମକାଳୀନ ଏକ ପତ୍ରିକାରେ ଏହାକୁ ଓଡ଼ିଶା ଜେନେରାଲ୍ ବ୍ୟାପଟିଷ୍ଟ ମିଶନ୍ ପ୍ରେସ୍ ଭାବରେ ମଧ୍ୟ ଅଭିହିତ କରାଯାଇଅଛି ।

*(ତାରକା ଓ ଶୁଭବାର୍ତ୍ତା - ସଂଖ୍ୟା ୦୨ - ୧୮୮୭ - ଫେବୃୟାରୀ)*

'ଓଡ଼ିଶା ମିଶନ ପ୍ରେସ୍' ସମ୍ପର୍କରେ ଯତ୍‌କିଞ୍ଚିତ ବିବରଣୀ ଏଯାବତ୍ ଏ ଲେଖକ ସଂଗ୍ରହ କରିଅଛି, ତାହା ନିମ୍ନରେ ଉଲ୍ଲେଖ କରାଯାଉଛି ।

**'ଓଡ଼ିଶାମିଶନ ପ୍ରେସ୍' ସ୍ଥାପନ ହେବା ପୂର୍ବରୁ ଓଡ଼ିଆ ପ୍ରକାଶନ:**

ମିଶନାରୀ ପେଗ୍‌ସ୍ ତାଙ୍କର ମିଶନାରୀ ବିବରଣୀରେ ଲେଖିଛନ୍ତି,

'It is pleasing at this period of the Mission, to observe the preparation and circulation of useful books and tracts, before a press was established in the Province. It is well observed by Mr. Pike;-

"When our great English Martyrologist refers to the wounds inflicted on the Papal system, by the invention of printing, he remarks, "I suppose that either the Pope must abolish printing, or he must seek a new world to reign over, for else, as this world standeth, "**PRINTING WILL DOUBTLESS ABOLISH HIM.**" Subsequent ages have evidenced the truth of these remarks. The advocates of the Romish Antichrist, in the martyrologist's day, complained of the "pestilent little books," with which the Reformers were deluging benighted lands. The Missionaries in Orissa have been furnishing the brahmuns with similar causes of complaint, and printing appears to be one of the means by which the God of truth will abolish them. At the annual Conference held at Cuttack, several resolutions were adopted on the subject of tracts, and other publications. It may be more interesting to furnish the minutes of the Conference, than to present the details in another form.'

*(Peggs – P.221-222.)*

## ୧୮୨୨ ସାଲ ପର୍ଯ୍ୟନ୍ତ ଓଡ଼ିଆରେ ପ୍ରକାଶିତ ପୁସ୍ତକାବଳୀ:

ଓଡ଼ିଶାରେ ବାଇବଲ ଓ ଅନ୍ୟାନ୍ୟ ଧର୍ମୀୟ ପୁସ୍ତକ ବିତରଣକୁ ଲକ୍ଷ୍ୟକରି ୧୮୨୭ ସାଲର ମିଶନାରୀ ରିପୋର୍ଟରେ ମିଶନ ପ୍ରେସ ପୂର୍ବରୁ ପ୍ରକାଶ ପାଇଥିବା ଓଡ଼ିଆ ପୁସ୍ତକଗୁଡ଼ିକର ନାମ ଉଲ୍ଲେଖ କରାଯାଇଅଛି:-

**'Circulation of the Scriptures and religious Books.**

The necessity of such exertions is shewn in the Report of 1827, furnished by the author, on his return from India. "To shew the necessity of this department of missionary labour, it may be interesting to the friends of the Mission to know the whole number of printed Books and Tracts in the Oreah language in 1822. It appears to have been as follows :

1. The Oreah Bible, by Dr. Carey, in five vols. 8vo.
2. A Vocabulary, Oreah and English, by a Native.
3. A poem of 100 pages on the Christian religion, written by a Bengalee Christian.
4. A Tract on the stopping of Juggernaut's car at Serampore, by Mr. Ward, written to prevent a human sacrifice that the car might proceed.
5. A Tract upon the folly of the worship of Juggernaut.

6. Scripture Extracts. (one leaf). A copy or two of another Tract has been found in Orissa. Behold, dear brethren the whole of a Christian Oreah Library on the arrival of your Missionaries in Orissa.

*(Peggs – P.315.)*

ଶ୍ରୀରାମପୁରଠାରେ ମୁଦ୍ରିତ ହୋଇଥିବା କେତେକ ଓଡ଼ିଆ ପୁସ୍ତକ ସମ୍ପର୍କରେ ମିଶନାରୀ ପେଗସ୍ ଲେଖନ୍ତି-

'In addition to several pieces, in different degrees of preparation for the press, the following have been printed at Serampore and Calcutta:-1. Elementary Tables of the Oreah language. Printed at the expence of the School Book Society, Calcutta.'

*(Peggs – P.315.)*

## ଶ୍ରୀରାମପୁର ମିଶନ ପ୍ରେସ୍‌ରେ ମୁଦ୍ରିତ ଓଡ଼ିଆ ପୁସ୍ତକ:

The Early Publications of the Serampore Missionaries ପ୍ରବନ୍ଧରେ G.A.Grierson ଶ୍ରୀରାମପୁରରେ ମୁଦ୍ରିତ ଓଡ଼ିଆ ପୁସ୍ତକର ଏକ ସାରଣୀ ପ୍ରଦାନ କରିଛନ୍ତି:

| | | |
|---|---|---|
| ୦୧. ନିଉ ଟେଷ୍ଟାମେଣ୍ଟ ଓ ଧର୍ମ ସଂଗୀତ | - | ୧୮୦୯ |
| ୦୨. ମହାତ୍ମାମାନଙ୍କ ଜୀବନୀ | - | ୧୮୧୧ |
| ୦୩. ଐତିହାସିକ ପୁସ୍ତକର କେତେକାଂଶ | - | ୧୮୧୨ |
| ୦୪. ସମ୍ପୂର୍ଣ୍ଣ ବାଇବଲ | - | ୧୮୧୬ |
| ୦୫. ବାଇବଲର ଦ୍ୱିତୀୟ ସଂସ୍କରଣ | - | ୧୮୨୦ |
| ୦୬. ନିଉ, ଟେଷ୍ଟାମେଣ୍ଟର ପରିବର୍ତ୍ତିତ ମୁଦ୍ରଣ | - | ୧୮୨୧ |
| ୦୭. ନିଉ ଟେଷ୍ଟାମେଣ୍ଟ | - | ୧୮୨୨ |
| ୦୮. ଓଲ୍ଡ୍ ଟେଷ୍ଟାମେଣ୍ଟ | - | ୧୮୩୨ |
| ୦୯. ଧର୍ମ ପୁସ୍ତକ ୨ୟ ବର୍ଗ - ୟିଶରଏଲ ବିବରଣ | - | ୧୮୧୧ |
| ୧୦. ଧର୍ମ ପୁସ୍ତକ ୧ମ ବର୍ଗ - ମୋଶହର ବିବରଣ | - | ୧୮୧୧ |
| ୧୧. ଧର୍ମ ପୁସ୍ତକ ଅନ୍ତଃ ବର୍ଗ - ଯୀଶୁଖ୍ରୀଷ୍ଟଙ୍କ ମଙ୍ଗଳ ସମାଚର | - | ୧୮୧୧ |
| ୧୨. ଦାଉଦଙ୍କ ଗୀତ | - | ୧୮୩୩ |
| ୧୩. ମାଥିଉ ଲିଖିତ ମଙ୍ଗଳ ସମାଚାର | - | ୧୮୩୬ ଓ |
| ୧୪. ମାଥିଉ ଲିଖିତ ମଙ୍ଗଳ ସମାଚାର | - | ୧୮୩୬ |

*(The Early Publications of the Serampore Missionaries*

*G.A.Grierson - Indian Antiquary - 1903 - p. 13-14*

## ଓଡ଼ିଶାରେ ମିଶନ ପ୍ରେସ୍ ସ୍ଥାପନର ଆଦ୍ୟ ଉଦ୍‌ଯୋଗ:

୧୮୩୬ ଖ୍ରୀଷ୍ଟାବ୍ଦରେ ଲଫବରଫଠାରେ ଯେଉଁ କମିଟୀ ସଭା ହୋଇଥିଲା, ସେଥିରେ ଓଡ଼ିଶାଠାରେ ଏକ ପ୍ରେସ୍‌ର ଆବଶ୍ୟକତା ରହିଛି ବୋଲି ଏଥିରେ ଆଲୋଚିତ ହୋଇଥିଲା । କମିଟୀ ସଭାରେ ଉପସ୍ଥିତ ଏହି ପ୍ରସ୍ତାବ ସର୍ବସମ୍ମତି କ୍ରମେ ତଥା ଆନନ୍ଦର ସହିତ ଗୃହୀତ ହୋଇଥିଲା । ଉକ୍ତ ବାର୍ଷିକ ବିବରଣୀରେ ଉଲ୍ଲେଖ ଅଛି:-

'ସୋସାଇଟୀର ପୁସ୍ତକ ଓ ଟ୍ରାକ୍ଟ ବିଭାଗର ଦକ୍ଷତାକୁ ଲକ୍ଷ୍ୟ କରି କମିଟୀ ନିଶ୍ଚୟ କରିଅଛନ୍ତି ଯେ କଟକଠାରେ ଏକ ପ୍ରିଣ୍ଟିଂପ୍ରେସ୍ ସ୍ଥାପନ କରାଯିବା ଉଚିତ ଏବଂ ଏହା ଶ୍ରୀଯୁକ୍ତ ସଟନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହିବ । କମିଟୀ ଏହା ମଧ୍ୟ ନିଶ୍ଚୟ କରିଅଛନ୍ତି ଯେ, ଶ୍ରୀଯୁକ୍ତ ସଟନ କଟକଠାରେ ରହିବା ସଙ୍ଗେ ସଙ୍ଗେ, ମିଶନାରୀ ପରିଶ୍ରମର ସମସ୍ତ କାର୍ଯ୍ୟପରେ ପ୍ରେସ ପ୍ରତି ବିଶେଷ ଦୃଷ୍ଟି ରଖିବେ ।'

*(Peggs - p. 238.)*

## ମିଶନାରୀ ଲେସୀଙ୍କ ଦ୍ୱାରା ଓଡ଼ିଶାକୁ ପ୍ରେସ ଆନୟନ:

୧୮୩୭ ସାଲରେ ମିଶନାରୀ ଚାର୍ଲସ ଲେସୀ ଭାରତ ପ୍ରତ୍ୟାବର୍ତ୍ତନ କରିବା ସମୟରେ ଏକ ପ୍ରେସ ସଙ୍ଗରେ ଆଣିଥିଲେ । ଓଡ଼ିଶାରେ ପ୍ରେସ ନାମକ ବସ୍ତୁଟିକୁ ଦେଖିବା ସ୍ୱପ୍ନ ଥିଲା । ଓଡ଼ିଆ ଭାଷାରେ ପୁସ୍ତକ ଛାପିବା ନିମନ୍ତେ ମିଶନାରୀମାନଙ୍କ ପକ୍ଷରେ ଅତୀବ କଷ୍ଟକର ଥିଲା । ଓଡ଼ିଶାରେ ପ୍ରେସଟିଏ ସ୍ଥାପନ ହେବା ଫଳରେ ଏଠାରେ ମୁଦ୍ରଣ ଜନିତ ଏକ ନବ ଯୁଗ'ର ସୂତ୍ରପାତ ହେଲା । ଓଡ଼ିଶାରେ ମୁଦ୍ରାଯନ୍ତ୍ର ପ୍ରତିଷ୍ଠାକୁ ଲକ୍ଷ୍ୟ କରି ମିଶନାରୀ ବିବରଣୀରେ ଲେଖାଅଛି:-

'Mr. Lacey took out a Press with him on his return to India in 1837. Mr. Lacey states that on the arrival of the Press, several persons called to look at it, and appeared to view it as *half a miracle*. Mr. Sutton soon announced that one press was insufficient for their work. In consequence of these additional facilities, the Missionaries carry on their operations in the printing department, on a more extensive scale. Previously to the arrival of the printing press, Mr. Sutton, who has the care of the publishing department, felt increasingly the extreme inconvenience of being placed three hundred miles from the place where the Society's publications were printed, and expressed an opinion that it would be needful for him to remove nearer to the press, or to have that brought nearer to him. Unless this were done, he stated, that the work of revising the

scriptures would occupy a long life, and even then be very imperfectly performed. The establishment of the printing office, has, of course, removed the inconvenience complained of.'

*(Peggs - P. 316.)*

## ଓଡ଼ିଆ ମିଶନ ପ୍ରେସ ସ୍ଥାପନ ଓ ଫ୍ରେଣ୍ଡ ଅଫ୍ ଇଣ୍ଡିଆ'ର ମତ:

ଓଡ଼ିଶାରେ ଓଡ଼ିଆ ମିଶନ ପ୍ରେସ'ର ସ୍ଥାପନ ଏବଂ ତାହାର କାର୍ଯ୍ୟକଳାପକୁ ଦୃଷ୍ଟି ଆଗରେ ରଖି ୧୮୩୮ ମସିହାରେ ଫ୍ରେଣ୍ଡ ଅଫ୍ ଇଣ୍ଡିଆ ଯେଉଁ ମତ ଦେଇଥିଲେ ତାହା ଆମୋଷ ସଟନଙ୍କ ପୁସ୍ତକରୁ ଉଦ୍ଧାର କରିଦେଉଅଛୁ-

## Orissa

'We have received a copy of a tract printed at Cuttack, at a press which the Missionaries have this year established at that station. It is printed in the Oriya character, and for neatness of execution is not exceeded by any similar brochure which has issued from the metropolitan presses in Calcutta. It does no little credit to those, to whose feelings of public spirit and Christian benevolence the district is now indebted for an efficient press. The establishment of a press in any province is an important era in its history. It is delightful therefore to contemplate the rapid increase of the means of intellectual and religious improvement, through means of this mighty engine in the various and even remote provinces of this empire. We now witness the establishment of presses, at the opposite extremities of the Bengal Presidency through the spirited exertions of Missionaries, but for whose labours those provinces might long have remained destitute of them. Looking down to the southernmost of the provinces, we find a press set up in the country of Orissa.

"We rejoice that a press has been established in that country capable of executing any work in the Oriya language and character. The extent to which the language is used has only been discovered of late. We find that it is spoken and written through an extent of country three hundred miles in length from the sea, to one hundred miles in length west of Sumbhulpore, and more than two hundred miles in breadth from Midnapore where it melts

into Bengalee, to Ganjam where it meets the Teloogoo. It was indispensable therefore to the completeness of missionary operation to that kingdom, that means should be provided on the spot for multiplying books in a language so extensively used. But why should the benefits of this local press be confined to missionary operations? Why should not Government avail itself of the means of communication with the people which have thus been provided by publishing its own acts and notifications through the same channel ? We know that a strong disposition exists in the highest quarter to provincialize the public service in Orissa. It is the wish of Government, that those who are appointed to this province should apply themselves earnestly to the acquisition of the vernacular tongue, and should move in a circle of promotion within the Province itself. In this arrangement there is much wisdom.But to render it efficient, it is necessary to follow it up by the translation of all orders which the people are required to understand and act on into their own language, and by a liberal use of the press which has now been established in the Province."

*(Orissa and Its Evangalization – Amos Sutton – 1850 – P. 319-320.)*

ଜେମ୍‌ସ୍ ପେଗସ୍‌ଙ୍କ ଦ୍ୱାରା ପ୍ରଦତ୍ତ ସମାନ ବିବରଣୀରେ କିଛି ଅଧିକ ବିବରଣୀ ପ୍ରଦାନ କରାଯାଇଛି:

'In this arrangement there is much wisdom. Indeed since the principle has been adopted, that the people can be more efficiently governed through their own language than through a foreign medium, it has been necessary to consider the civil officers in Orissa as in a measure individualized from the rest of the service; this is a great step towards the improvement of the Province.'

*(Peggs- P. 323.)*

**ଓଡ଼ିଆ ମିଶନ ପ୍ରେସ ଓ ମିଶନାରୀ ଆମୋଷ ସଟନଙ୍କ ସମ୍ପର୍କରେ ଦି କମିଟୀ ଅଫ୍ ଦି କାଲ୍‌କାଟା ଅକ୍ସିଲାରୀ ବାଇବଲ ସୋସାଇଟୀ'ର ମତ:**

ପୂର୍ବରୁ କୁହାଯାଇଛି ଯେ, ଓଡ଼ିଆ ମିଶନ ପ୍ରେସ ମିଶନାରୀ ଆମୋଷ ସଟନଙ୍କ ଦାୟିତ୍ୱରେ ଥିଲା । ଓଡ଼ିଆ ଭାଷା ସାହିତ୍ୟ, ଓଡ଼ିଆ ଜାତି ସହିତ ସଂଯୁକ୍ତ ମିଶନାରୀ ସଟନଙ୍କ

ଠ. ବାଇବଲ ପ୍ରଶ୍ନୋତ୍ତର - ଡକ୍ଟର ଆମୋଷ ସଟନ - ଏହାର ତିନୋଟି ସଂସ୍କରଣ ୧୮୪୦ ମସିହରୁ ୬୯ ମସିହା ମଧ୍ୟରେ ପ୍ରକାଶ ପାଇଥିଲା ।

ଡ. ଘାଟ ଛାଡ଼ ହେଲା - କଟକ, ୧୮୪୧, ପୃଷ୍ଠା ସଂଖ୍ୟା ୧୨ ।

ଢ. ନିସ୍ତାର ରତ୍ନାକର - *(The Jewel Mine of Salvation)* ଏହା ୧୮୪୨ ମସିହାରେ ପଦ୍ୟାକାରରେ କଟକ ମିଶନ ପ୍ରେସ୍‌ରୁ ପ୍ରକାଶିତ ହୋଇଥିଲା, ପୃଷ୍ଠା ସଂଖ୍ୟା ଥିଲା ବାର, ଏହାର ମୁଖ୍ୟ ଅନୁବାଦକ ଥିଲେ, ଚାର୍ଲସ୍ ଲେସୀ, ମେଶର୍ସ ଓ ମିଶନାରୀ ଆମୋଷ ସଟନ ।

ଣ. ସ୍ତୋତ୍ର ପୁସ୍ତକ - ସମ୍ପାଦନା: ଡକ୍ଟର ଆମୋଷ ସଟନ - ୧୮୪୪ ।

ତ. ବାଇବଲ ସହଚର - ଡକ୍ଟର ଆମୋଷ ସଟନ - ୧୮୪୬ ମସିହାରେ ପ୍ରକାଶିତ ।

ଥ. ଈଶ୍ୱରଙ୍କ ବାକ୍ୟର ଅନୁଧ୍ୟାନ - ଡକ୍ଟର ଆମୋଷ ସଟନ - ୧୮୪୬ ।

ଦ. ଧର୍ମପୁସ୍ତକର ବୃତାନ୍ତ ବିଷୟରେ ଉତ୍ତର ପ୍ରତ୍ୟୁତ୍ତର, ପୃଷ୍ଠା ସଂଖ୍ୟା ୧୨୨, କଟକ ୧୯୪୯ । ଏହାର ୨ୟ ସଂସ୍କରଣ ୧୮୪୨ ମସିହାରେ ପ୍ରକାଶିତ ହୋଇଥିଲା, ସେତେବେଳେ ଏହାର ପୃଷ୍ଠାସଂଖ୍ୟା ଥିଲା ୧୦୬ ।

ଧ. ଲୁସି ଓ ଧାଇ - ଡକ୍ଟର ଆମୋଷ ସଟନ - ୧୮୫୧ ।
୧୭. କେଉଁ ଶାସ୍ତ୍ର ଈଶ୍ୱରଙ୍କର ଦତ୍ତ - ଆମୋଷ ସଟନ ।

ନ. ଧର୍ମ ବିଷୟରେ କଥାବାର୍ତ୍ତା - ପ୍ରଥମ ଭାଗ - ପୃଷ୍ଠାସଂଖ୍ୟା ୧୨, କଟକ, ୧୮୭୦ (ଅଷ୍ଟାଦଶ ସଂସ୍କରଣ) ।

ପ. ଧର୍ମ ବିଷୟରେ କଥାବାର୍ତ୍ତା - ଦ୍ୱିତୀୟ ଭାଗ - ପୃଷ୍ଠାସଂଖ୍ୟା ୩୬, କଟକ, ୧୮୭୦ (ଚତୁର୍ଥ ସଂସ୍କରଣ) ।

ଫ. ସତ୍ୟ ଧର୍ମ ପ୍ରକାଶକ - (ପଦ୍ୟ), ପୃଷ୍ଠା ସଂଖ୍ୟା ୩୬, କଟକ, ୧୮୭୦ (ତ୍ରୟୋଦଶ ଅଧ୍ୟାୟ) ।

ବ. ଦେବପୂଜା - ୨ୟ ସଂସ୍କରଣ - ପୃଷ୍ଠା ସଂଖ୍ୟା ୨୦, କଟକ, ୧୮୭୪,

ଭ. ବାଇବଲ ସହଚର - ପୃଷ୍ଠା ସଂଖ୍ୟା ୩୬୬, କଟକ, ୧୮୮୦(ଜନ୍ ବକ୍‌ଲେଙ୍କ ଦ୍ୱାରା ସଂଶୋଧିତ) ଓ

ମ. ଦୈବୀଜ୍ଞାନ ପ୍ରଦର୍ଶିତ *(Devine Knowledge Displayed)* ଏହା ଧର୍ମ ବିଷୟକ କଥାବାର୍ତ୍ତାର ଏକ ପୁସ୍ତକ, ଏହା ଅଠଷଠି ପୃଷ୍ଠା ସମ୍ବଳିତ, ୧୮୨୯ ମସିହାରେ ଏହା କଲିକତା ଟ୍ରାକ୍‌ଟ୍ ଆଣ୍ଡ୍ ବୁକ୍ ସୋସାଇଟୀ ପକ୍ଷରୁ ମୁଦ୍ରିତ ହୋଇଥିଲା ।



# ଓଡ଼ିଆ ମିଶନାରୀ ସାହିତ୍ୟ ଓ ସମକାଳୀନ ସମାଜ

୧୮୨୭ ମସିହାର ଏକ ରିପୋର୍ଟରେ ୧୮୨୨ ମସିହାରେ ଓଡ଼ିଆ ଭାଷାରେ ପ୍ରକାଶିତ ଓଡ଼ିଆ ଖ୍ରୀଷ୍ଟଧର୍ମୀୟ ପୁସ୍ତକାବଳୀର ଏକ ସାରଣୀ ମିଶନାରୀ ଜେମ୍ସ୍ ପେଗସ୍ ପ୍ରଦାନ କରିଛନ୍ତି ।

(୧) ଓଡ଼ିଆ ବାଇବଲ - ଡକ୍ଟର କେରୀ, ୫ ଭାଗରେ ବିଭକ୍ତ ।

(୨) ଖ୍ରୀଷ୍ଟଧର୍ମ ସମ୍ପର୍କୀତ ୧୦୦ ପୃଷ୍ଠାର ଏକ କବିତା - ଜଣେ ବଙ୍ଗୀୟ ଖ୍ରୀଷ୍ଟିୟାନ ।

(୩) ଶ୍ରୀରାମପୁରଠାରେ ରଥଯାତ୍ରା ବନ୍ଦ, ଏହା ରଥଚକ ତଳେ ଆତ୍ମହତ୍ୟାକୁ ବନ୍ଦ କରିବା ଉଦ୍ଦେଶ୍ୟରେ ଉଇଲିୟମ୍ ଓ୍ୱାର୍ଡଙ୍କ ଦ୍ୱାରା ଲିଖିତ ।

(୪) ଜଗନ୍ନାଥ ଉପାସନାର ମୂର୍ଖତା (ଏକ ଖ୍ରୀଷ୍ଟିୟାନ୍ ଟ୍ରାକ୍ଟ) ।

(୫) ଧର୍ମପୁସ୍ତକରୁ ସଂଗୃହୀତ କାବ୍ୟ - ଗୋଟିଏ ପୃଷ୍ଠା ।

(୬) ମିଶନାରୀମାନେ ଓଡ଼ିଶା ଆସିବା ପୂର୍ବରୁ ଏହି ପୁସ୍ତକଗୁଡିକ ମୁଦ୍ରିତ ହୋଇ ସାରିଥିଲା ।

*(Peggs.315)*

୧୮୪୫ ମସିହାର ରିପୋର୍ଟରେ ସମ୍ପାଦକ ଅନୁଧ୍ୟାନ କରିଥିଲେ ଯେ ୧୮୪୪ ମସିହାରେ ମିଶନାରୀ ସଟନଙ୍କ ଦ୍ୱାରା ବାଇବେଲର ସମ୍ପୂର୍ଣ୍ଣ ସଂଶୋଧନ କାର୍ଯ୍ୟ ସମାପନ ହୋଇ ଏକ ନୂତନ ସଂସ୍କରଣ ପ୍ରକାଶ ପାଇଥିଲା । ଏଥିପାଇଁ ବ୍ରିଟିଶ ଏବଂ ଫରେନ ବାଇବେଲ୍ ସୋସାଇଟୀ ସମସ୍ତ ମୁଦ୍ରଣ ବ୍ୟୟ ବହନ କରିଥିଲେ । ବ୍ୟକ୍ତିଗତ ଉଦ୍ୟମ ନିମନ୍ତେ ସଟନଙ୍କୁ ସୋସାଇଟୀ ପକ୍ଷରୁ ୫୦୦୦ ଟଙ୍କା ପ୍ରଦାନ କରାଯାଇଥିଲା ।

*(Peggs.316)*

ସେହିପରି କାଲ୍‌କାଟା ଅକ୍ସିଲିଆରୀ ବାଇବଲ ସୋସାଇଟୀ ମତ ଦିଅନ୍ତି ଯେ, ବାଇବଲ ପୁରାତନ ନିୟମର ଏକ ସଂଶୋଧିତ ନୂତନ ସଂସ୍କରଣ ଆଚାର୍ଯ୍ୟ ଆମୋଷ ସଟନଙ୍କଦ୍ୱାରା ସୋସାଇଟୀ ନିମନ୍ତେ ପ୍ରସ୍ତୁତ କରାଯାଇଛି । ଏହା ତିନି ଭାଗରେ ବିଭକ୍ତ

ହୋଇଛି, ପୁରାତନ ନିୟମ ୨୦୦୦ ନକଲ ଲେଖାଏଁ ମୁଦ୍ରିତ ହୋଇଛି । ଏହାବ୍ୟତୀତ ଆଦିପୁସ୍ତକ, ଗୀତସଂହିତା ଏବଂ ହିତୋପଦେଶର ୩୦୦୦ ଲେଖାଏଁ ନକଲ ପ୍ରସ୍ତୁତ କରାଯାଇଛି । ଏ ସମସ୍ତ ପୁସ୍ତକ ସଟନଙ୍କର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଓଡ଼ିଆ ମିଶନ ପ୍ରେସ୍‌ରେ ମୁଦ୍ରିତ ହୋଇଛି । ଏହା ବ୍ୟତୀତ ଯିଶାଇୟ ଭବିଷ୍ୟତବକ୍ତାଙ୍କର ପୁସ୍ତକ (ସ୍ୱତନ୍ତ୍ର ଭାବରେ) ଏକ ହଜାର ନକଲର ମୁଦ୍ରିତ ହୋଇଥିଲା । ଏଠାରେ ମିଶନାରୀ ଡକ୍ଟର ସଟନଙ୍କର ଏକ ମୂଲ୍ୟବାନ ରିପୋର୍ଟର କିୟଦଂଶ ପ୍ରଦାନ କରାଯାଉଛି ।

"Since the completion of the Old Testament Scriptures, I have been at Calcutta and presented my accounts for printing, &c, which I expect will be paid at the next committee meeting of the Bible Society. In the mean time they have paid me the last instalment of 2,000 rupees for my personal labour as translator, making the sum of 5,000 rupees, which I have carried to the credit of the General Baptist Missionary Society. I trust it will not be deemed unbecoming in me, here to record my humble thankfulness to Him, who has been to me so much better than my fears or deserts, and permitted me to accomplish an undertaking of so responsible and important a character. May it still further please Him, that neither the imperfections of the work, nor the sinfulness of the workman, shall be permitted to operate against this translation of the Holy Bible being rendered an extensive blessing.

x x x xxx xxx

The third volume of Tracts, entitled 'controversial series,' intended as a ' Guide for enquirers,' containing 244 pages, has also been finished, and a number of copies of this, as also of the two preceding volumes, have been put in circulation. One other volume of miscellaneous tracts yet remains to complete the series."

*(Peggs.317-18)*

ସମକାଳୀନ ମିଶନାରୀ ସାହିତ୍ୟର ପ୍ରକାଶନ ସମ୍ପର୍କରେ ମିଶନାରୀ ଉଇଲିୟମ୍ ବୃକ୍‌ସ ପୁସ୍ତକଗୁଡ଼ିକର ସାରଣୀ ଏହିପରି ପ୍ରଦାନ କରିଛନ୍ତି ।

## ଧର୍ମପୁସ୍ତକ

(କ) ବାଇବେଲ - ତୃତୀୟଭାଗ - ଗୀତସଂହିତାଠାରୁ ମଲାଖି ପର୍ଯ୍ୟନ୍ତ - ୨୦୦୦ କପି ।

(ଖ) ମାଥିଉ ଲିଖିତ ସୁସମାଚାର - ୫୦୦୦ କପି ।

## ଟ୍ରାକ୍ଟ୍‌ସ/ପ୍ରଚାରପତ୍ର

(କ) ଓଡ଼ିଆ ଟ୍ରାକ୍ଟ୍ - ଗଦ୍ୟଭାଗ - ତୃତୀୟଭାଗ - ୩୦୦୦ କପି ।

(ଖ) ଖ୍ରୀଷ୍ଟଙ୍କ ନିମନ୍ତ୍ରଣ - ୧୦,୦୦୦ କପି ।

(ଗ) ଉନ୍ମୁକ୍ତ ତୋରଣ ସିଂହାସନ - ୫୦୦୦ କପି ।

(ଘ) ନିସ୍ତାର ରତ୍ନାକର - ୧୦,୦୦୦ କପି ।

(ଙ) ଧର୍ମାନ୍ୱେଷୀମାନଙ୍କ ନିମନ୍ତେ ନିର୍ଦ୍ଦେଶାବଳୀ - ୫୦୦୦ କପି ।

(ଚ) ଖ୍ରୀଷ୍ଟଧର୍ମ: ଏକ ସଂକ୍ଷିପ୍ତ ଦୃଷ୍ଟିପାତ - ୫୦୦୦ କପି ।

(ଛ) ଈଶ୍ୱର ଆତ୍ମାସ୍ୱରୂପ - ୫୦୦୦ କପି ।

(ଜ) ଖ୍ରୀଷ୍ଟଧର୍ମରେ ଧର୍ମାନ୍ତରିତ ହିନ୍ଦୁମାନଙ୍କର, ଖ୍ରୀଷ୍ଟଧର୍ମରେ ଅବିଶ୍ୱାସୀ ଭାତୃବୃନ୍ଦଙ୍କ ପ୍ରତି ଅଭିଭାଷଣ - ୧୦,୦୦୦ କପି ଓ

(ଝ) ବାର୍ଥଙ୍କର ଗୀର୍ଜା ଇତିହାସ - ୫୦୦୦ କପି ।

ସେହିପରି ଏହି ସମୟକୁ ନୂତନ ନିୟମର ଦ୍ୱିତୀୟ ସଂସ୍କରଣ ଏବଂ ସୁସମାଚାରଗୁଡିକର ଭିନ୍ନ ଭିନ୍ନ ମୁଦ୍ରଣ ଏବଂ ପ୍ରଚାରପତ୍ରଗୁଡିକର ପୁନର୍ମୁଦ୍ରଣ ହାତରେ ରହିଥିଲା ବୋଲି ବୃକ୍ସ୍ କହିଛନ୍ତି ।

*(Peggs.319)*

### ଧର୍ମୀୟ ଟ୍ରାକ୍ଟ୍‌ର ଆବଶ୍ୟକତା:

୧୮୩୯ ମସିହାର ଏକ ରିପୋର୍ଟ କୁହେ ଯେ, ୧୮୩୮ ମସିହାରେ କଟକରେ ଓଡ଼ିଶା ମିଶନ ପ୍ରେସ୍ ସ୍ଥାପିତ ହେବାପରେ ସେହିବର୍ଷ ରଥଯାତ୍ରା ନିମନ୍ତେ ଏକ ଟ୍ରାକ୍ଟ୍ ମୁଦ୍ରିତ ହୋଇଥିଲା । ତାହା ହେଉଛି ଜଗନ୍ନାଥ ତୀର୍ଥଯାତ୍ରାର ଆଶ୍ଚର୍ଯ୍ୟଜନକ ସୁବିଧା । (The wonderful advantages of a Piligrimage to Juggernaut) ଏହି ଟ୍ରାକ୍ଟ୍ ଅନେକ / ବହୁତ ସଂଖ୍ୟାରେ ବିତରିତ ହୋଇଥିଲା ବୋଲି ମିଶନାରୀ ଜେମ୍‌ସ୍ ପେଗ୍‌ସ ତାଙ୍କର ବିବରଣୀରେ ପ୍ରକାଶ କରିଛନ୍ତି ।

*(Peggs.320)*

## ଧର୍ମୀୟ ଟ୍ରାକ୍‌ଟ୍‌ର ବିତରଣ ଓ ଜନମାନସରେ ଏହାର ପ୍ରଭାବ:

ପୁରୀର ରଥଯାତ୍ରା ସମୟରେ ଘଟୁଥିବା ବିଭିନ୍ନ ଅମାନୁଷିକ ଘଟଣାବଳୀକୁ ଲକ୍ଷ୍ୟକରି ମିଶନାରୀମାନେ ପୁରୀକୁ ଓ ରଥଯାତ୍ରା ସମୟକୁ ଧର୍ମପ୍ରଚାରର ପ୍ରକୃଷ୍ଟ ସମୟ ବୋଲି ଧରିନେଇଥିଲେ । ସେଥିପାଇଁ ବିଭିନ୍ନ ଟ୍ରାକ୍‌ଟ୍‌/ପ୍ରଚାରପତ୍ର ଏହି ସମୟବେଳକୁ ମୁଦ୍ରଣ କରାଯାଇଥିଲା । ବିତରିତ ଟ୍ରାକ୍‌ଟ୍‌/ପ୍ରଚାରପତ୍ରକୁ ଗ୍ରହଣ କରିଥିବା ବ୍ୟକ୍ତିମାନଙ୍କର ଏ ସମ୍ପର୍କିତ ବିଭିନ୍ନ ପ୍ରତିକ୍ରିୟା ପ୍ରକାଶ ପାଇଥିଲା । ମିଶନାରୀ ଚାର୍ଲସ ଲେସୀ ଏହିପରି ଏକ ଘଟଣାର ଅବତାରଣା କରିଛନ୍ତି -

"ଗତକାଲି ଜଣେ ଅତ୍ୟନ୍ତ କୌତୂହଳପ୍ରଦ ଅନୁସନ୍ଧାନକାରୀ ବା ନିଶ୍ଚିତଭାବରେ ଧର୍ମାନ୍ତରିତ ପହଞ୍ଚିଲେ । ସେ ଥିଲେ ନୂଆଗାଁ ସିଲୋଇର ଅଧିବାସୀ । ସେ ପ୍ରଥମେ ଖ୍ରୀଷ୍ଟଧର୍ମ ସମ୍ପର୍କିତ ସୂଚନା ପୁରୀରେ ମୋ ଠାରୁ (ମିଶନାରୀ ଚାର୍ଲସ ଲେସୀ) ପାଇଥିଲେ, ଏବଂ ରଥଯାତ୍ରା ସମୟରେ ଖଣ୍ଡିଏ ବହି ନେଇଥିଲେ । ବହୁଦିନଧରି ସେ ପୁସ୍ତକ ସମ୍ପର୍କରେ କିଛି କହିନଥିଲେ ଏବଂ ଯଦିବା ସେ ପୁସ୍ତକଟିକୁ ସେ ପଢ଼ିପାରିଥିଲେ କିନ୍ତୁ ସେଥିରୁ ସେ କିଛି ବୁଝି ପାରିନଥିଲେ । ଏହାର କିଛିକାଳ ପରେ ସେ ଖଣ୍ଡିଏ ଟ୍ରାକ୍‌ଟ୍‌/ପ୍ରଚାରପତ୍ର ରାମଚନ୍ଦ୍ର ଯାଚକଙ୍କଠାରୁ କଟକର ତେଲେଙ୍ଗାବଜାରରୁ ସଂଗ୍ରହ କରିଥିଲେ । ତାହାକୁ ସେ ପାଠ କରିଥିଲେ ଓ ବୁଝିପାରିଥିଲେ ମଧ୍ୟ, ଏହାପରେ ଏହି ବ୍ୟକ୍ତି ଜଣକ ଗଙ୍ଗାଧର ଷଡଙ୍ଗୀଙ୍କୁ ସାକ୍ଷାତ କରିଥିଲେ ଚୌଧୁରୀ ବଜାରରେ । ଗଙ୍ଗାଧରଙ୍କୁ ସେ କେତେକ ପ୍ରଶ୍ନ ପଚାରି ଖ୍ରୀଷ୍ଟଧର୍ମ ସମ୍ପର୍କୀତ ଆବଶ୍ୟକୀୟ ତଥ୍ୟ ସଂଗ୍ରହ / ଗ୍ରହଣ କରିଥିଲେ । ପବିତ୍ର ଶାସ୍ତ୍ର (ବାଇବେଲ) ଏବଂ ନିଜର ସ୍ୱଧର୍ମ ସମ୍ପର୍କରେ ତାଙ୍କର ଦୃଷ୍ଟିଭଙ୍ଗୀ ସଠିକ ଥିଲା । ଖ୍ରୀଷ୍ଟ ଯେ ତାଙ୍କର (ଅନ୍ୱେଷଣକାରୀଙ୍କ) ପାପପାଇଁ ମଧ୍ୟ ମୃତ୍ୟୁବରଣ କରିଥିଲେ, ଏହା ବ୍ୟତୀତ ତାଙ୍କର ଜୀବନରେ କ୍ଷମା ଓ ପରିତ୍ରାଣର ଅନ୍ୟ ଗତି ନଥିଲା । ଗତକାଲି ଏଠାକୁ ଆସିବା ପୂର୍ବରୁ ବ୍ୟାପ୍ତିସ୍ମ ସମ୍ପର୍କରେ ସେ କିଛି ଜାଣି ନଥିଲେ । ସେ ବିପତ୍ନୀକ ଥିଲେ ଏବଂ ତାଙ୍କର ବାରବର୍ଷ ବୟସର ଗୋଟିଏ ପୁତ୍ର ସନ୍ତାନ ଅଛି । ସେ କାହା ଉପରେ ବୋଝ ଗ୍ରସ୍ତ ହେବାକୁ ଉଚିତ୍ ମଣି ନଥିଲେ । ସେ ଯଦିବା କିଛି ପାଠ ପଢିଥିଲେ ତଥାପି, ଆଜି ସଖାଳେ ସେ ଖ୍ରୀଷ୍ଟିୟାନପୁରଠାରେ କିଛି କାମରେ ସେ ସାଧାରଣ କୁଲିକର୍ମ କରିଥିଲେ । ସେ କିଛି ଅର୍ଥ ସଞ୍ଚୟ କରି କୌଣସି ଯାଗା କିଣିବାକୁ ଇଛା କରୁଥିଲେ ।

*(Peggs - 320)*

ମିଶନାରୀ ଲେସୀଙ୍କ ଏହି ବିବରଣୀ ଭାରତ ଓ ଇଂଲଣ୍ଡର ମିଶନାରୀମାନଙ୍କର ହୃଦୟସ୍ପର୍ଶୀ ହୋଇଥିଲା । ମିଶନାରୀ ଲେସୀଙ୍କର ଆଉ ଏକ ବିବରଣୀ ଏଠାରେ ଉଲ୍ଲେଖ କରାଯାଇପାରେ । ଲେସୀ ଏହି ଘଟଣାଟିକୁ ଆନନ୍ଦଦାୟକ ଘଟଣା ବୋଲି ଉଲ୍ଲେଖ କରିଛନ୍ତି -

"କଟକଠାରୁ ଚାରି ମାଇଲ ଦୂର କାଶୀପୁର ନାମକ ଗୋଟିଏ କ୍ଷୁଦ୍ର ଗ୍ରାମର ଜଣେ ବ୍ୟକ୍ତି ଛଅ ବର୍ଷ ତଳେ ସୁସମାଚାର ଶ୍ରବଣ କରିଥିଲେ ଏବଂ ପରିତ୍ରାଣର ମାର୍ଗ ସମ୍ପର୍କରେ କଥୋପକଥନ କରିଥିଲେ । ଏହାପରେ ସେ ସେଠାକୁ ଚାଲିଯାଇଥିଲେ । ଆଉ ମୁଁ (ମିଶନାରୀ ଚାର୍ଲସ୍ ଲେସୀ) ତାଙ୍କୁ ଆଉ କେଉଁଠାରେ ଦେଖିବାକୁ ପାଇନଥିଲି । ସେ ତାଙ୍କ ଭାଇମାନଙ୍କ ସହିତ ବାସ କରୁଥିଲେ । କିନ୍ତୁ ସେ କ'ଣ ଶୁଣିଥିଲେ ଏବଂ ତାଙ୍କୁ ଦିଆଯାଇଥିବା ପୁସ୍ତକରୁ ସେ କ'ଣ ପଢିଥିଲେ, ଫଳରେ ଦେବାଦେବୀଙ୍କ ପ୍ରତି ତାଙ୍କର ଭକ୍ତିଭାବ କମିଯାଇଥିଲା । ତାଙ୍କର ବିଶ୍ୱାସ ତ୍ରାଣକର୍ତ୍ତା (ପ୍ରଭୁ ଯୀଶୁଖ୍ରୀଷ୍ଟ)ଙ୍କ ଠାରେ ସ୍ଥିର ରଖିଥିଲେ । ଗୋଟିଏ ବର୍ଷ ପୂର୍ବରୁ ସେ ଅତ୍ୟନ୍ତ ଅସୁସ୍ଥ ହୋଇପଡିଲେ ଏବଂ ତାଙ୍କର ରୋଗମୁକ୍ତ ହେବା ସମ୍ପୂର୍ଣ୍ଣ ସନ୍ଦେହଜନକ ଥିଲା । ତାଙ୍କର ଅବସ୍ଥା ଯେତେ ଅଧିକ ମନ୍ଦତର ହେଲା ତାଙ୍କର ହୃଦୟ ପ୍ରଭୁ ଯୀଶୁଙ୍କଠାରେ ସେହି ପରିମାଣରେ ଲାଗି ରହିଥିଲା । ସେହି ସମୟରେ ତାଙ୍କ ଭାଇମାନେ ତାଙ୍କୁ ଦେବାପୂଜାର ବୃଥା ନିଗୂଢ଼ ତତ୍ତ୍ୱ ପ୍ରଦାନ କଲେ । ସେ ସେହି ଅବସ୍ଥାରେ ମୋତେ ଓ ସ୍ଥାନୀୟ ଦେଶୀୟ ଖ୍ରୀଷ୍ଟିୟାନମାନଙ୍କୁ ଦେଖିବାନିମନ୍ତେ ଇଚ୍ଛା ପ୍ରକାଶ କଲେ । ଯେପରିକି ସେ ଖ୍ରୀଷ୍ଟଧର୍ମ ବିଷୟରେ କିଛି ଆଲୋଚନା କରିପାରନ୍ତି ଏବଂ ଖ୍ରୀଷ୍ଟଙ୍କୁ ସ୍ୱୀକାର କରିପାରନ୍ତି । କିନ୍ତୁ ତାଙ୍କର ସମ୍ପର୍କୀୟମାନେ ତାଙ୍କର ଏହି ଇଚ୍ଛାକୁ ଦୃଢ଼ ଭାବରେ ବିରୋଧ କଲେ । ମାତ୍ର, ତାଙ୍କର ଏ କ୍ଷେତ୍ରରେ ଦୃଢପ୍ରତିଜ୍ଞା ବୃଦ୍ଧିପାଇବାରେ ଲାଗିଲା

*(Peggs - 320)*

ଲେସୀ କୁହନ୍ତି ଯେ, ପ୍ରକୃତରେ କେତେ ଟ୍ରାକ୍ଟ୍ ୧୮୩୫ ମସିହା ସୁଦ୍ଧା ବିତରଣ କରାଯାଇଥିଲା ସେ ସମ୍ପର୍କରେ ସେ ସମ୍ପୂର୍ଣ୍ଣ ଅଜ୍ଞ । ତେବେ ସେ (ଲେସୀ) କଟକର କେଉଁ ସ୍ଥାନକୁ ଅନ୍ୟାନ୍ୟ ମିଶନାରୀମାନେ ଯାଇପାରିନାହାନ୍ତି ସେହି ସ୍ଥାନରେ ସେ ପ୍ରାୟ ୧୦୦୦୦ ଟ୍ରାକ୍ଟ୍ ବିତରଣ କରିଛନ୍ତି । ଲେସୀଙ୍କ ବିବରଣୀରେ ଏହିପରି ଲେଖାଯାଏ -

"Several instances of their great usefulness have appeared. To mention no other, a man now a member of

our Church some years ago received a tract. He read it till literally worn to tatters. He at length left his wife and village, and came to Cuttack to enquire of us the way; assigning as a reason the wonderful things written in the paper. We did not like his manner, a trifling circumstance increased our prejudice against him, and so we dismissed him. But he would not leave us. To whom, said he, should I go, my own people are in sin, and their minds, dark, you have the way? I will work and do any thing you wish me, but I will not leave you. At length convinced of his sincerity, we received him into the Church.""

*(Peggs, P. 321)*

ସେହିପରି ୧୮୪୪ ମସିହାର ଗୋଟିଏ ରିପୋର୍ଟରେ ଲେଖାଯାଏ -

"One instance of usefulness has just been brought to my knowledge by the person who derived the benefit. A certain man of his acquaintance, who lived about eight miles from Cuttack received a tract named the Jewel Mine of Salvation, but could not read it. This little book he sent to our friend, desiring him to read it. He soon applied himself to read and comprehend the traet. It was in easy poetical measure, and he presently understood all it contained. The tract made a beneficial and powerful impression on his mind. The first thing that attracted his attention was the unity of the design, and uniform oneness of the book in comparison with his own shastras. The more he read, the more his judgment opened, and the greater his approbation became; till, to use his own very descriptive language, his own shastras looked like a tangled and intricate jungle which it is impossible to penetrate, and like a cow pasture, which in this country is intersected by a thousand paths, neither resulting from or conducting to one place, but after circuitous windings terminating in nothing. The receiver of this tract sought and obtained others, till he finally became a consistant disciple of Christ, and is now baptized and become a christian preacher."

*(Peggs - 322)*

୧୮୪୪ ମସିହାରେ ଇଂଲିସ୍ ଟ୍ରାକ୍‌ଟ୍ ସୋସାଇଟୀର ଗୋଟିଏ ପ୍ରକାଶନରେ ଏହିପରି ଲେଖାଯାଏ । ବାଲେଶ୍ୱରଠାରେ ମିଶନାରୀ କାର୍ଯ୍ୟ କରୁଥିବା ଜଣେ ମିଶନାରୀ ଶ୍ରୀଯୁକ୍ତ ଫିଲ୍ଲିପ ଏକ ବିବରଣୀ ଦିଅନ୍ତି -

'ଓଡ଼ିଶା ପ୍ରୋଭିନସ୍ ପ୍ରଦେଶର ପୂର୍ବ ଦିଗରୁ ପ୍ରାୟ ୧୩ ବର୍ଷ ତଳେ ଜଣେ ବ୍ୟକ୍ତି ୨୦୦ ମାଇଲ ଅତିକ୍ରମ କରି ରଥଯାତ୍ରା ଦେଖିବା ନିମନ୍ତେ ଆସିଥିଲେ । ସେଠାରୁ ସେ ଏକ ଟ୍ରାକ୍‌ଟ୍/ପ୍ରଚାରପତ୍ର ପାଇ ତାଙ୍କୁ ସଙ୍ଗରେ ନେଇ ନିଜ ଗ୍ରାମକୁ ଫେରି ଯାଇଥିଲେ । ସେଠାରେ ଏହି ଟ୍ରାକ୍‌ଟ୍‌ଟିକୁ ମନଯୋଗ ସହକାରେ ପାଠ କରିବା ପରେ ମଧ୍ୟରାତ୍ରର ଅନ୍ଧକାର ସ୍ୱରୂପ ମସ୍ତିଷ୍କରେ ଆଲୋକର ସ୍ଫୁରଣ ଘଟିଲା । ଏହି ଟ୍ରାକ୍‌ଟ୍‌ଟିକୁ ସେ ପର୍ଯ୍ୟନ୍ତ ପାଠ କଲେ, ଯେ ପର୍ଯ୍ୟନ୍ତ ତାଙ୍କର ଦୃଢ଼ ବିଶ୍ୱାସ ସମସ୍ତ ମୂର୍ତ୍ତିସମୂହକୁ ନଷ୍ଟ କରିନଥିଲା ଏବଂ ଶେଷରେ ଟ୍ରାକ୍‌ଟ୍‌ରେ ପ୍ରଦତ୍ତ ନିୟମାବଳୀକୁ ପାଳନ କରିବାରେ ଲାଗିଲେ । ପରବର୍ତ୍ତୀ ସମୟରେ ସେ ଆଉ କୌଣସି ଟ୍ରାକ୍‌ଟ୍ ପାଇ ପାଠ କରିଥିଲେ କି ନାହିଁ ତାହା ମୁଁ (ମିଷ୍ଟର ଫିଲିପ୍) ଜାଣିପାରିନାହିଁ । କିନ୍ତୁ, ସେ ଏହି ସତ୍ୟକୁ ଆବିଷ୍କାର କରିବାକୁ ସକ୍ଷମ ହୋଇଥିଲେ । ତାଙ୍କର ମୃତ୍ୟୁପରେ ତାଙ୍କର କନିଷ୍ଠ ଭ୍ରାତା ମଧ୍ୟ ଏହି ସତ୍ୟାନୁସରଣ କରିଥିଲେ ।

*(Peggs - 322)*

"In an interesting revival of religion in our native boarding schools, several of the boys referred to our tracts and books as first inducing serious impressions. Little Henry And His Bearer was mentioned by one or two, but upon inquiry of Salomon (our dear Khund boy) what first impressed his mind, he replied it was the Call To Unconverted Sinners, (in Oriyaof course,) and especially the words, "Turn or die." lie afterwards became a candidate for baptism, and we hoped to add him to the visible church, but he was, with two other dear boys suddenly cut down by the cholera. We grieve not for him, however, as for those of whom we have no hope. But shall I thus dismiss the record of our poor boy? May not some eye glance of this brief notice, to whom the words which first impressed his mind a.e as applicable as to the poor barbarous Khund? Yes, ye young, ye gay, ye refined, ye amiable, whether in America or England, you must " turn or die." Oh may these

words prove to be one of the arrows of the Holy Ghost, piercing your heart, and leading you to turn and live!"

*(Paggs 345-46)*

ଏହି ସମସ୍ତ ବିବରଣୀରୁ ଗୋଟିଏ କଥା ନିର୍ଯ୍ୟାସ ରୂପେ କୁହାଯାଇପାରେ ଯେ ମିଶନାରୀମାନେ ଓଡ଼ିଶାରେ ଖ୍ରୀଷ୍ଟଧର୍ମର ଉନ୍ମେଷ ଓ ବିକାଶ ନିମନ୍ତେ ଯେଉଁ ଟ୍ରାକ୍‌ଟ୍/ ପ୍ରଚାରପତ୍ର ବିତରଣ କରୁଥିଲେ ତାହା ଉପଯୁକ୍ତ ସମୟରେ ଜନସାଧାରଣଙ୍କ ଉପରେ ପ୍ରଭାବ ପକାଇବ, ତାହା ସେମାନେ ଜାଣିଥିଲେ । ଟ୍ରାକ୍‌ଟ୍/ପ୍ରଚାରପତ୍ର ବିତରଣ କରିବାର ଉଦ୍ଦେଶ୍ୟ ଧର୍ମଗତ ହୋଇଥିବାରୁ ଏହାର ଧର୍ମଗତ ପ୍ରଭାବରେ ମିଶନାରୀମାନେ ପ୍ରଭାବିତ ହେବା ସ୍ୱାଭାବିକ ।

## ଧର୍ମୀୟ ପ୍ରଚାର ପତ୍ର ବିତରଣର ଧର୍ମଗତ ଉଦ୍ଦେଶ୍ୟ:

କେଉଁ କାରଣରୁ ଖ୍ରୀଷ୍ଟଧର୍ମର ମିଶନାରୀମାନେ ବିଭିନ୍ନ ଦେଶ ଭ୍ରମଣ ପୂର୍ବକ ଖ୍ରୀଷ୍ଟଙ୍କର ଧର୍ମବାଣୀ ପ୍ରଚାର କରୁଥିଲେ, ତାହାର ଉଦ୍ଦେଶ୍ୟ ସମ୍ପର୍କରେ ଏହିଠାରେ ସାମାନ୍ୟ ଆଲୋକପାତ କରାଯାଉଛି । ମିଶନାରୀମାନଙ୍କର ଉଦ୍ଦେଶ୍ୟ ସମ୍ପୂର୍ଣ୍ଣ ଧାର୍ମିକ ।

୧ ମ ଉଦ୍ଦେଶ୍ୟ : ଯୀଶୁଖ୍ରୀଷ୍ଟ ତାଙ୍କ ମୃତ୍ୟୁର ପୁନରୁତ୍ଥାନ ପରେ ମାନବଜାତି ନିମନ୍ତେ ଯେଉଁବାଣୀ ଦେଇଥିଲେ, ତାହା ଏହିପରି:

" ତୁମ୍ଭେମାନେ ସମୁଦାୟ ଜଗତକୁ ଯାଇ ସମସ୍ତ ମାନବ ଜାତି ନିକଟରେ ସୁସମାଚାର ଘୋଷଣା କର ।"

*(ଲୂକ ଲିଖିତ ସୁସମାଚାର - ୧୬ ପର୍ବ, ୧୫ପଦ)*

ମିଶନାରୀମାନେ ଯୀଶୁଙ୍କର ଏହି ଉକ୍ତିକୁ ବା ଆଦେଶକୁ ପାଳନ କରିବା ନିମନ୍ତେ ସମଗ୍ର ବିଶ୍ୱରେ ତାଙ୍କର ବାକ୍ୟକୁ ପ୍ରଚାର କରିଥିଲେ । ପ୍ରଚାରର ମୂଳ ସୂତ୍ର ସ୍ୱରୂପ ଯୀଶୁଙ୍କର ପ୍ରଦତ୍ତ ଦୃଷ୍ଟାନ୍ତ 'ବୀଜବପନକାରୀ'କୁ ଗ୍ରହଣ କରିଥିଲେ ।

ଏଥର ଦ୍ୱିତୀୟ ଉଦ୍ଦେଶ୍ୟଟି ଦେଖାଯାଉ, ବାଇବଲରେ ଯୀଶୁ ଦେଇଥିବା ଦୃଷ୍ଟାନ୍ତ ମଧ୍ୟରୁ ଗୋଟିଏ ହେଉଛି 'ବୀଜବପନକାରୀ'ର ଦୃଷ୍ଟାନ୍ତ, ତାହା ଏହିପରି:

ଜଣେ ବୀଜ ବୁଣାଳି ଆପଣା ବିହନକୁ ବୁଣିବାକୁ ବାହାରିଲା । ସେ ବୁଣୁବୁଣୁ କେତେକ ବାଟ ପାଖରେ ପଡ଼ିଲା ଓ ପାଦ ତଳେ ଦଳି ହୋଇଗଲା, ପୁଣି ଆକାଶର ଚଢ଼େଇମାନେ ସେଗୁଡ଼ିକ ଖାଇଗଲେ ।

ଆଉ କେତେପଥର ଉପରେ ପଡ଼ିଲା, ପୁଣି ଗଜା ହୋଇ ରସ ଅଭାବରୁ ଶୁଖିଗଲା । ଆଉ କେତେକ କଣ୍ଟାଗଛଗୁଡ଼ାକ ମଧ୍ୟରେ ପଡ଼ିଲା, ପୁଣି କଣ୍ଟାଗଛଗୁଡ଼ାକ ତାହା ସାଙ୍ଗେସାଙ୍ଗେ ବଢ଼ି ସେଗୁଡ଼ିକ ଚାପି ପକାଇଲା ।

ଅନ୍ୟ କେତେକ ଭଲ ଭୂଇଁରେ ପଡ଼ିଲା, ଆଉ ବଢ଼ି ଶଏଗୁଣ ଫଳ ଫଳିଲା ।

X X X

ଲୋକମାନେ ଏହା ବୁଝି ନପାରିବାରୁ ଯୀଶୁ ଏହାର ଅର୍ଥ ସେମାନଙ୍କୁ ବୁଝାଇଦେଲେ -

ଆଉ ଯେଉଁମାନେ ବାଟ ପାଖରେ ଅଛନ୍ତି, ସେମାନେ ବାକ୍ୟ ଶୁଣନ୍ତି; ତାହାପରେ ଶୟତାନ ଆସି, ଯେପରି ସେମାନେ ବିଶ୍ୱାସ କରି ପରିତ୍ରାଣ ନ ପାଆନ୍ତି, ଏଥି ନିମନ୍ତେ ସେମାନଙ୍କ ହୃଦୟରୁ ବାକ୍ୟ ହରଣ କରିନିଏ ।

ପୁଣି, ଯେଉଁମାନେ ପଥର ଉପରେ ଅଛନ୍ତି, ସେମାନେ ବାକ୍ୟ ଶୁଣି ଆନନ୍ଦରେ ଗ୍ରହଣ କରନ୍ତି, କିନ୍ତୁ ସେମାନଙ୍କର ଚେର ନଥିବାରୁ ସେମାନେ ଅଳ୍ପ ସମୟ ବିଶ୍ୱାସ କରନ୍ତି ଓ ପରୀକ୍ଷା ସମୟରେ ଧର୍ମତ୍ୟାଗୀ ହୁଅନ୍ତି । ଆଉ କଣ୍ଟାଗଛଗୁଡ଼ାକ ମଧ୍ୟରେ ଯାହା ପଡ଼ିଲା, ତାହା ଏହିପରି ଲୋକେ, ଯେଉଁମାନେ ଶୁଣି ସାଂସାରିକ ଚିନ୍ତା, ଧନ ଓ ସୁଖଭୋଗର ବଶବର୍ତ୍ତୀ ହୋଇ ଜୀବନଯାତ୍ରା କରୁ କରୁ ଚାପି ହୋଇଯାଆନ୍ତି, ପୁଣି ପରିପକ୍ୱ ଫଳ ଉତ୍ପନ୍ନ କରନ୍ତି ନାହିଁ ।

ଆଉ ଉତ୍ତମ ଭୂମିରେ ଯାହା ପଡ଼ିଲା, ତାହା ଏପରି ଲୋକେ, ଯେଉଁମାନେ ଉତ୍ତମ ଓ ସରଳ ହୃଦୟରେ ବାକ୍ୟ ଶୁଣି ତାହା ଧରି ରଖନ୍ତି ଏକ ଧୈର୍ଯ୍ୟ ସହକାରେ ଫଳ ଫଳନ୍ତି ।

*(ଲୂକ ଲିଖିତ ସୁସମାଚାର - ପୃ. ୮୧)*

ଦ୍ୱିତୀୟ ଧର୍ମଗତ ଉଦ୍ଦେଶ୍ୟ ହେଉଛି:-

ଯୀଶୁଖ୍ରୀଷ୍ଟ ତାଙ୍କର ମୃତ୍ୟୁରୁ ପୁନରୁତ୍ଥାନ ପରେ ମାନବଜାତି ନିମନ୍ତେ ଯେଉଁ ବାଣୀ ଦେଇଥିଲେ, ତାହା ଏହିପରି -

'ତୁମ୍ଭେମାନେ ସମୁଦାୟ ଜଗତକୁ ଯାଇ ସମସ୍ତ ମାନବଜାତି ନିକଟରେ ସୁସମାଚାର ଘୋଷଣା କର ।

*(ଲୂକ ଲିଖିତ ସୁସମାଚାର - ୧୬:୧୫)*

ଅତଏବ ମିଶନାରୀ ଆନ୍ଦୋଳନରେ ଏହି 'ବୀଜ ବପନକାରୀ'ର ବୀଜ ବପନର ଦୃଷ୍ଟାନ୍ତ ଈଶ୍ୱରଙ୍କ ବାକ୍ୟ ପ୍ରଚାରକୁ ବୁଝାଇ ଥାଏ । ତେଣୁ ବାଇବଲର ଏହି ଆଦେଶକୁ

ଅର୍ଥାତ୍ ଈଶ୍ୱରଙ୍କ ବାକ୍ୟ ପ୍ରଚାରକୁ ସେମାନେ ପାଳନ କରିବା ନିମନ୍ତେ ଟ୍ରାକ୍ଟ୍, ପୁସ୍ତକ ଇତ୍ୟାଦି ବିତରଣ କରୁଥିଲେ । ତେଣୁ ଏହାକୁ ଧର୍ମଗତ / ଖ୍ରୀଷ୍ଟ ଧର୍ମ ଶାସ୍ତ୍ରାନୁମୋଦିତ ଉଦ୍ଦେଶ୍ୟ ବୋଲି ଗ୍ରହଣ କରିନେବାକୁ ଇଚ୍ଛା ହୁଏ ।

ମିଶନାରୀମାନେ ଯୀଶୁଙ୍କର ଏହି ଉକ୍ତିକୁ/ଆଦେଶକୁ ପାଳନ କରିବା ନିମନ୍ତେ ସମଗ୍ର ବିଶ୍ୱରେ ତାଙ୍କର ବାକ୍ୟକୁ ପ୍ରଚାର କରିଥିଲେ । ପ୍ରଚାରର ମୂଳ ସୂତ୍ର ସ୍ୱରୂପ ଯୀଶୁଙ୍କର ପ୍ରଦତ୍ତ ଦୃଷ୍ଟାନ୍ତ 'ବୀଜ ବପନକାରୀ' ଦୃଷ୍ଟାନ୍ତକୁ ଗ୍ରହଣ କରିନେଇଥିଲେ ।

ଅତଏବ ମିଶନାରୀ ଆନ୍ଦୋଳନରେ ଏହି ବୀଜବୁଣାଳୀର ବୀଜ ବପନକାରୀର ଦୃଷ୍ଟାନ୍ତ ଈଶ୍ୱରଙ୍କ ବାକ୍ୟପ୍ରଚାରକୁ ବୁଝାଇଥାଏ । ବୀଜ ବପନ କରିବା ଅର୍ଥ ଏହି ଟ୍ରାକ୍ଟ୍ ବା ପ୍ରଚାରପତ୍ର ବିତରଣ କରିବା । ତେଣୁ ବାଇବେଲର ଏହି ଆଦେଶକୁ ଅର୍ଥାତ୍ ଈଶ୍ୱରଙ୍କ ବାକ୍ୟ ପ୍ରଚାରକୁ ସେମାନେ ପାଳନକରିବା ନିମନ୍ତେ ଟ୍ରାକ୍ଟ୍, ପୁସ୍ତକ ଇତ୍ୟାଦି ବିତରଣ କରୁଥିଲେ । ତେଣୁ ଏହାକୁ ଧର୍ମଗତ ଖ୍ରୀଷ୍ଟଧର୍ମ ଶାସ୍ତ୍ରାନୁମୋଦିତ ଉଦ୍ଦେଶ୍ୟ ବୋଲି କହିବାକୁ ଇଚ୍ଛାହୁଏ ।

ରାଜା ମୁକୁନ୍ଦ ବଲ୍ଲଭଙ୍କର ଶ୍ୟାଳକ ରାମକିଶୋର ଘୋଷ ଯିଏ କି କଲିକତାରେ ବସାସ କରୁଥିଲେ, କିନ୍ତୁ ଓଡ଼ିଶାର ଅଧିବାସୀ ଥିଲେ, ସେ ଓଡ଼ିଆ ଭାଷାରେ ଧର୍ମପୁସ୍ତକ ପାଠକରି ନିମ୍ନୋକ୍ତ ମତ ପ୍ରଦାନ କରିଥିଲେ:-

"ପବିତ୍ର ପୁସ୍ତକ, ଯାହାକି ଓଡ଼ିଆ ଅକ୍ଷର ଓ ଓଡ଼ିଆ ଭାଷାରେ ଅନୂଦିତ ହୋଇ ମୁଦ୍ରିତ ହୋଇଛି ତାହା ଓଡ଼ିଶାର ବଡ଼ସାନ ସମସ୍ତଙ୍କର ବୋଧଗମ୍ୟ ହେବ ।

(The Holy Book which you have translated into the language of Orissa and printed in the Orissa character, will be under stood in the province of Orissa, both by great and small.)

*((Tenth memoir respecting the translations of the Sacred Scriptures into the oriental languages - p. 51)*



# ଊନବିଂଶ ଶତାବ୍ଦୀରେ ବଙ୍ଗଳା, ଅସମୀୟା ଓ ଓଡ଼ିଆ ମିଶନାରୀ ସାହିତ୍ୟ

## ୧. ବଙ୍ଗଳା ମିଶନାରୀ ସାହିତ୍ୟ:

ଭାରତର ଅନ୍ୟ ପ୍ରଦେଶ ଅପେକ୍ଷା ବଙ୍ଗଦେଶରେ ଦେଶୀୟ ମୁଦ୍ରାଯନ୍ତ୍ର ଅଧିକ ପରିମାଣରେ କ୍ରିୟାଶୀଳ । ୧୮୫୭ ମସିହା ସୁଦ୍ଧା କଲିକତାରେ ପ୍ରାୟ ୫ ଲକ୍ଷ ୭୧ ହଜାର ଛଅଶହ ସତୁରୀ ଟଙ୍କା ମୂଲ୍ୟର ପୁସ୍ତକ ମୁଦ୍ରିତ ହୋଇଥିଲା । ୧୭୯୩ ମସିହାରେ ବଙ୍ଗଦେଶରେ ପ୍ରମୁଖ ଭାବରେ ମିଶନାରୀ ଡକ୍ଟର ଉଇଲିୟମ୍ କେରୀ ନିଜର ମିଶନାରୀ କାର୍ଯ୍ୟର ଆରମ୍ଭ କରିଥିଲେ । ପରବର୍ତ୍ତୀ ସମୟରେ ଅନେକ ସକ୍ଷମ ମିଶନାରୀ କେରୀଙ୍କର ମହନୀୟ କାର୍ଯ୍ୟାବଳୀକୁ ଆଗେଇ ଦେଇଥିଲେ ।୧୮୩୦ ମସିହାବେଳକୁ ଡକ୍ଟର ଆଲେକ୍‌ଜାଣ୍ଡର ଡଫ୍ ଭାରତବର୍ଷକୁ ଆସି ସମଗ୍ର ଭାରତବର୍ଷରେ ଇଂରାଜୀ ଶିକ୍ଷା ପ୍ରବର୍ତ୍ତନ ଦିଗରେ ଅଧିକରୁ ଅଧିକ ପରିମାଣରେ କାର୍ଯ୍ୟ କରିଥିଲେ । ଏ ନେଇ ଅବଶ୍ୟ ସୂଚନାଯୋଗ୍ୟ ଯେ ସେକାଳରେ ଅଧିକ ପରିମାଣରେ ଖ୍ରୀଷ୍ଟିୟାନ ତାମିଲଥିଲେ ଏବଂ ଦ୍ୱିତୀୟରେ ବଙ୍ଗବାସୀ । ୧୮୯୨ ମସିହା ବେଳକୁ ବଙ୍ଗ ମିଶନର ପରିସଂଖ୍ୟାକ ଏହିପରି ଥିଲା ।

| | | |
|---|---|---|
| ୟୁରେପୀୟ ମିଶନାରୀ | - | ୬୫ |
| ଦେଶୀୟ ମିଶନାରୀ | - | ୧୬ |
| ଦେଶୀୟ | - | ୧୪୭ |
| ଦେଶୀୟ ସଞ୍ଚାଳକ | - | ୬୧୬ |
| ଦେଶୀୟ ଖ୍ରୀଷ୍ଟିୟାନ | - | ୧୬,୨୭୭ |
| ଭର୍ଣ୍ଣାକୁଲାର ମିଶନ ସ୍କୁଲର ଛାତ୍ରଛାତ୍ରୀ | - | ୧୦୩୧ |
| ଆଙ୍ଗ୍‌ଲୋ ଭର୍ଣ୍ଣାକୁଲାର ସ୍କୁଲର ଛାତ୍ରଛାତ୍ରୀ | - | ୭୯୫୪ |

### ଶ୍ରୀରାମପୁର ମିଶନାରୀମାନଙ୍କଦ୍ୱାରା ପ୍ରକାଶକ:

କଲିକତା ଟ୍ରାକ୍‌ଟ୍ ସୋସାଇଟୀ ସ୍ଥାପନ ପୂର୍ବରୁ ଶ୍ରୀରାମପୁରର ମିଶନାରୀମାନଙ୍କ ଅନେକ ମିଶନାରୀ ପ୍ରଚାର ପତ୍ର ଓ ପୁସ୍ତକ ପ୍ରକାଶ କରିଥିଲେ । ମାତ୍ର ପରବର୍ତ୍ତୀ ସମୟରେ

କଲିକତା ଟ୍ରାକ୍‌ଟ୍ ସୋସାଇଟୀ ଏକ ପ୍ରମୁଖ ସ୍ଥାନ ଗ୍ରହଣ କରିଥିଲା । ୧୭୯୮ ମସିହାରେ ବ୍ୟାପଟିଷ୍ଟ ମିଶନାରୀମାନଙ୍କ ଏକ ପ୍ରେସ୍ ଭାରତକୁ ଆସିଥିଲା । ଏହା ମିଶନାରୀ ଉଇଲିୟମ୍ କେରୀ ଓ ମିଶନାରୀ ଜେ.ବାଇଣ୍ଡେକ୍‌ଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । ୧୭୯୯ ମସିହା ବେଳକୁ ମିଶନାରୀ ଉଇଲିୟମ୍ ୱାର୍ଡ ଓ ତାହାଙ୍କ ସହକାରୀମାନଙ୍କ ଦ୍ୱାରା ଭାରତ ଆସିବା ପୂର୍ବରୁ କେରୀ ଜଣେ ଅକ୍ଷର ଶିଳ୍ପୀ ସହିତ ଯୋଗାଯୋଗ କରାଯାଇ ଥିଲା । ମାତ୍ର ୱାର୍ଡ ଆସିବାପରେ ଏହି କାର୍ଯ୍ୟ ଅଧିକ ସରଳ ହୋଇପାରିଥିଲା । ମିଶନାରୀ କ୍ଷେତ୍ରରେ କେନ୍ଦ୍ରସ୍ଥଳୀ ଥିଲା ଶ୍ରୀରାମପୁର । କେରୀ ସେଠାରେ ଜାନୁୟାରୀ ୧୦ ତାରିଖ ୧୮୦୦ ମସିହାରେ ଶ୍ରୀରାମପୁରରେ ପହଞ୍ଚିଥିଲେ । ସେହିବର୍ଷ ମାର୍ଚ୍ଚ ୧୦ ତାରିଖରେ ମାଥିଉ ଲିଖିତ ସୁସମାଚାରର ପ୍ରଥମ ପୃଷ୍ଠା ମୁଦ୍ରିତ ହୋଇ ପ୍ରକାଶିତ ହେଲା । ପ୍ରଥମେ କେତେକ ଖ୍ରୀଷ୍ଟିୟାନ୍ ସଙ୍ଗୀତାବଳୀ ଯାହାକି ବଙ୍ଗଭାଷାରେ ବିଭିନ୍ନ ସମୟରେ ଲିଖିତ ହୋଇଥିଲା, ତାହା ମୁଦ୍ରିତ ହେଲା ।

ପ୍ରଚାରପତ୍ର ବଣ୍ଟନର ଏକଦୃଶ୍ୟ ଏଠାରେ ଉଲ୍ଲେଖ କରାଯାଉଛି, ଯାହା ମିଶନାରୀ ୱାର୍ଡ ବର୍ଣ୍ଣନା କରିଛନ୍ତି ଏହିପରି – "ମାର୍ଚ୍ଚ ୩୦ ତାରିଖ ୧୮୦୦ ମସିହା ସକାଳେ କେରୀ, ମାର୍ଶମାନ ଏବଂ ୱାର୍ଡ ଗୋଟିଏ ଛକସ୍ଥାନରେ ଠିଆ ହୋଇ ଖ୍ରୀଷ୍ଟିୟାନ ବର୍ଣ୍ଣନାତ୍ମକ କ୍ଷୁଦ୍ରକବିତା ଗାନ କରିବାକୁ ଲାଗିଲେ । ଲୋକମାନେ ଏହା ଦେଖି ନିଜ ନିଜର ଘରୁ ଏହି ମିଶନାରୀମାନଙ୍କୁ ଦେଖିବାକୁ ଲାଗିଲେ । ସେମାନଙ୍କ ମଧ୍ୟରୁ କେତେକ ଏହି ଗୀତ ଗାଉଥିବା ସାହେବମାନଙ୍କୁ ଦେଖିବାକୁ ଆସିଲେ । ଆଉ କେତେକ ଲୋକ ସାହେବମାନେ ଗାନ କରୁଥିବା ଏହି କ୍ଷୁଦ୍ର କବିତାକୁ ସଂଗ୍ରହ କରିବାକୁ ଆଗେଇ ଆସିଥିଲେ ।

ଏହାପରେ ପରେ ଦଶ ଆଜ୍ଞା, ଖ୍ରୀଷ୍ଟଙ୍କ ଜୀବନୀ ଏବଂ କେତେକ ସୁମସାଚାର ଏବଂ ନିସ୍ତାର ରତ୍ନାକର ନାମକ ପୁସ୍ତକ ଏହି ପ୍ରେସ୍‌ରୁ ପ୍ରକାଶିତ ହେଲା । ଏହାର ପ୍ରାୟ ତିନିମାସ ପରେ 'ଦି ଗସପେଲ୍ ମେସେଞ୍ଜର' ବା 'ସୁସମାଚାର ବାହକ' ପୁସ୍ତକ ପ୍ରକାଶ ପାଇଥିଲା । ଏହି କ୍ଷୁଦ୍ର ପୁସ୍ତିକାଟି ଏକଶହ ଧାଡିର । ଏହାର ଲେଖକ ହୋଉଛନ୍ତି ରାମରାମ ବାସୁ । ଏହା ବଙ୍ଗଭାଷାରେ ପ୍ରଥମ ସମ୍ପୂର୍ଣ୍ଣ ମୁଦ୍ରିତ ବଙ୍ଗଳା ପ୍ରଚାର ପତ୍ର । ଏହାର ଅନ୍ୟନାମ ଥିଲା – "The Mine of Salvation" ବା "Jewel Mine of Salvation" । ଏହା ଓଡ଼ିଆରେ 'ନିସ୍ତାର ରତ୍ନାକର' ନାମରେ ପ୍ରକାଶିତ ହୋଇଥିଲା । ଏ ସଂପର୍କରେ ପରିଶିଷ୍ଟରେ ଅଲୋଚନା କରାଯାଇଛି । ୧୮୦୦ ମସିହା ଅଗଷ୍ଟ ମାସରେ କେରୀ କହିଛନ୍ତି ଯେ ବର୍ମିଙ୍ଗହାମ୍‌ର ଶାମୁୟେଲ୍ ପିୟର୍ସଙ୍କର ଇଂରାଜୀ ରଚନା "A letter to the Lascars" ର ବଙ୍ଗଳା ଅନୁବାଦ ପ୍ରକାଶିତ ହେବାକୁ ଯାଉଛି ।

୧୭୯୧ ମସିହା ପୂର୍ବରୁ ଜନ୍ ଟମାସ ପବିତ୍ର ବାଇବେଲ୍ କିଛି ଅଂଶ ଅନୁବାଦ କରିଥିଲେ ବୋଲି ସମ୍ବାଦ ଆମେ ଜାଣିବାକୁ ପାଉ ।

ଏହା ପାଣ୍ଡୁଲିପି ଆକାରରେ ବିତରଣ କରାଯାଇଥିଲା । ଏହାପରେ ଉଇଲିୟମ୍ କେରୀ ୧୭୯୭ ମସିହାରେ ନୂତନ ନିୟମର ଏକ ଅନୁବାଦ ସମ୍ପୂର୍ଣ୍ଣ କରିଥିଲେ । ଏହାର ପ୍ରଥମ ସଂସ୍କରଣ ମୁଦ୍ରଣ ୧୮୦୧ ମସିହାରେ ସମ୍ପୂର୍ଣ୍ଣ ହୋଇଥିଲା । ୧୮୦୨ ମସିହାରେ ପୁରାତନ ନିୟମ ପ୍ରକାଶିତ ହୋଇଥିଲା ।

ଶ୍ରୀରାମପୁର ମିଶନାରୀମାନଙ୍କଦ୍ୱାରା ଆଉ କେତେକ ପ୍ରଚାରପତ୍ର ହେଲା ।

୧) ବ୍ରାହ୍ମଣମାନଙ୍କ ସମ୍ପର୍କରେ - ରାମରାମ ବସୁ ।
୨) ମିଶନାରୀମାନଙ୍କର ହିନ୍ଦୁମାନଙ୍କ ପ୍ରତି ଆଭିଭାଷଣ - ଉଇଲିୟମ୍ ୱାର୍ଡ ।
୩) ସତ୍ୟ ଆଶ୍ରୟ (ପଦ୍ୟ) - ପିତାମ୍ବର ସିଂହ ।
୪) ହିନ୍ଦୁମାନଙ୍କ ପ୍ରତି ଅଭିଭାଷଣ ।
୫) ଭିନ୍ନତା ବା କୃଷ୍ଣ ଓ ଖ୍ରୀଷ୍ଟଙ୍କ ମଧ୍ୟରେ ତୁଳନା (ପଦ୍ୟ) ।
୬) ୱାଟଙ୍କର ଇତିହାସ ସମ୍ବନ୍ଧୀୟ ପ୍ରଶ୍ନୋତ୍ତର ।
୭) ଆଲୋକପ୍ରଦାନକାରୀ - ପିତାମ୍ବର ସିଂହ ।
୮) ମାନସିକ ପ୍ରତିଫଳନ (ପଦ୍ୟ) - ଆଚାର୍ଯ୍ୟ ଜେ. ଚାମ୍ବରଲାଇନ୍ ।
୯) ୱାଟଙ୍କର ପ୍ରଶ୍ନୋତ୍ତର (ପଦ୍ୟ) - ଅନୁବାଦ ।
୧୦) ଦଶ ଆଜ୍ଞା (ପଦ୍ୟ) - ୱାଟ୍‌ଙ୍କର ପ୍ରଶ୍ନୋତ୍ତର ଏବଂ ଦଶ ଆଜ୍ଞା (ପଦ୍ୟ) ଉଭୟ କଲିକତା ଟ୍ରାକ୍‌ଟ୍ ସୋସାଇଟୀ ଦ୍ୱାରା ପ୍ରକାଶିତ 'ପରିତ୍ରାଣର ପଥ' ସହ ସଂଯୁକ୍ତ ହୋଇ ପ୍ରକାଶିତ ହୋଇଥିଲା ।
୧୧) ଅନୁତାପୀର ପ୍ରାର୍ଥନା - ଜେ. ଚାମ୍ବରଲାଇନର ।
୧୨) ଅକ୍ଷରାନୁକ୍ରମିକ ଧାଡି ଓ ପଦ୍ୟ - ୪ଗୋଟି ସଂସ୍କରଣ, ୧୮୧୦ ।
୧୩) ଆନନ୍ଦ ବନ୍ଧନ (ପଦ୍ୟ) ।
୧୪) ଜଗତର ସୃଷ୍ଟି (ପଦ୍ୟ) ।
୧୫) ଜଗନ୍ନାଥ - ଯୋଶୁଆ ମାର୍ଶମାନ ।
୧୬) ପବିତ୍ର ଶାସ୍ତ୍ରର ନିର୍ଯ୍ୟାସ - ୧୮୧୨ ଓ
୧୭) ଶ୍ରୀରାମପୁର ଠାରେ ଜଗନ୍ନାଥଙ୍କ ରଥ ଚାଳନା ସମ୍ପର୍କରେ - ଉଇଲିୟମ୍ ୱାର୍ଡ ପ୍ରମୁଖ ।

ବିଭିନ୍ନ ଭାଷାରେ ଏବଂ ଲକ୍ଷାଧିକ ପରିମାଣର ପ୍ରଚାରପତ୍ର ଶ୍ରୀରାମପୁର ମିଶନାରୀ ମାନଙ୍କଦ୍ୱାରା ୧୮୧୫ ମସିହାରେ ପ୍ରକାଶିତ ହୋଇଥିଲା । ସବୁଠାରୁ ଭଲ ବିଷୟ

ହେଲା । ଶ୍ରୀରାମପୁର ମିଶନାରୀମାନେ ୧୮୨୩ ମସିହାରେ ଗଠିତ କଲିକତା ଟ୍ରାକ୍ଟ୍ ସୋସାଇଟୀ ସହିତ ନିଜର ମିଶନାରୀ କାର୍ଯ୍ୟକୁ ମିଶାଇ ଦେବାକୁ ଚାହିଁଲେ ନାହିଁ । ୧୮୨୭ ମସିହା ବେଳକୁ ସେମାନେ (ଶ୍ରୀରାମପୁର ମିଶନାରୀ ମାନେ) ଲଣ୍ଡନ ରିଲିଜିୟସ୍ ଟ୍ରାକ୍ଟ୍ ସୋସାଇଟୀର ଏକ କରେସ୍‌ପଣ୍ଡେଣ୍ଟ୍ କମିଟି ଭାବରେ କାର୍ଯ୍ୟକରିବାକୁ ନିଜର ସ୍ୱୀକୃତି ପ୍ରଦାନ କଲେ । ୧୮୩୦ ମସିହାରେ ଏହି କମିଟୀ ଦ୍ୱାରା ପ୍ରକାଶିତ ପୁସ୍ତକାବଳୀର ଏକ ସାରଣୀ ପ୍ରକାଶିତ ହୋଇଥିଲା । ମାତ୍ର ତାହା ସମ୍ପୂର୍ଣ୍ଣ ସଠିକ୍ ନଥିଲା । ସେହିପରି ସି.ବି. ଲୁଇସ୍ ଶ୍ରୀରାମପୁର ମିଶନାରୀମାନଙ୍କଦ୍ୱାରା ପ୍ରକାଶିତ ପ୍ରଚାରପତ୍ରଗୁଡିକର ଏକ ସାରଣୀ ପ୍ରଦାନ କରିଥିଲେ ।

### ବ୍ୟାପଟିଷ୍ଟ ମିଶନାରୀ ପ୍ରକାଶନ:

୧୮୧୮ ମସିହାରୁ ୧୮୬୮ ମସିହା ମଧ୍ୟରେ ୨୩ ଗୋଟି ପ୍ରଚାର ପତ୍ର ଏବଂ ତିନି ଗୋଟି ମିଶନାରୀ ପୁସ୍ତକ ପ୍ରକାଶ ପାଇଥିଲା ସେଗୁଡ଼ିକ ହେଲା କ. ନିର୍ବାଚିତ ପଦ୍ୟାବଳୀ (୧ମ ଭାଗ ଓ ୨ୟ ଭାଗ), ଖ. ଫଟିକ୍ ଚାନ୍ଦଙ୍କର ଜୀବନୀ, ଗ.ସତ୍ୟ ଦର୍ଶନ, ଘ. ଯୀଶୁଙ୍କର ମୃତ୍ୟୁକାଳୀନ ବଚନ, ଙ. ମାନସିକ ପ୍ରତିଫଳକ, ଚ. ଗରୀବ ଯୋଷେଫ, ଛ. ସତ୍ୟ ଆଗ୍ରହ, ଜ. କୃଷ୍ଣପ୍ରସାଦଙ୍କର ଜୀବନୀ, ଝ. ପିତାମ୍ବର ସିଂହଙ୍କର ଜୀବନୀ ଓ ଞ. ପାର୍ବତ୍ୟ ଉପଦେଶ ଇତ୍ୟାଦି । ସେହିପରି ପୁସ୍ତକ ମଧ୍ୟରେ ବ୍ୟାପ୍‌ଟିଷ୍ଟ ସଂଗୀତ ପୁସ୍ତକ, ଖ୍ରୀଷ୍ଟଧର୍ମ ତତ୍ତ୍ୱର ଧାରା, ଧର୍ମ ପାଠ୍ୟପୁସ୍ତକ ଇତ୍ୟାଦି ।

### ଲଣ୍ଡନ ମିଶନାରୀ ସୋସାଇଟୀର ପ୍ରକାଶନ:

କଲିକତା ଟ୍ରାକ୍ଟ୍ ସୋସାଇଟୀ ସ୍ଥାପନ ପୂର୍ବରୁ ବଙ୍ଗଳାରେ ଲଣ୍ଡନ ମିଶନାରୀ ସୋସାଇଟୀ ପକ୍ଷରୁ ଅନେକ ପ୍ରଚାରପତ୍ର ଓ ପୁସ୍ତକ ପ୍ରକାଶିତ ଓ ବିତରିତ ହୋଇଥିଲା । ୧୮୧୮ ମସିହାରୁ ଏହାର ପ୍ରକାଶନ ଆରମ୍ଭ ହୋଇଛି । ଏହାର ପ୍ରକାଶନଗୁଡିକ ମଧ୍ୟରେ ମୁଖ୍ୟତଃ -

୧. ଦଶ ଆଜ୍ଞା (୧୮୧୮) - ୧୮୧୮

୨. ଜଣେ ପାଦ୍ରୀ ଓ ବ୍ରାହ୍ମଣ ମଧ୍ୟରେ କଥୋପକଥନ - ୧୮୧୮

୩. ଜଣେ ପଣ୍ଡିତ ଓ ଜଣେ ସରକାର ମଧ୍ୟରେ କଥୋପକଥନ - ଏଚ୍. ଟନ୍‌ଲୀ - ୧୮୧୮ ।

୪. ଜଣେ ଦରୱାନ ଓ ଜଣେ ମାଳୀ ମଧ୍ୟରେ କଥୋପକଥନ - ଆଚାର୍ଯ୍ୟ ଜେ. କିଥ୍ - ୧୮୧୮ ।

୫. ଜଗତର ତ୍ରାଣକର୍ତ୍ତାଙ୍କ ଇତିହାସ - ୧୮୧୮ ।

୬. କେଉଁ ଶାସ୍ତ୍ର ମାନନୀୟ - ଏଚ୍. ଟନ୍‌ଲୀ - ୧୮୧୮ ।

୭. ଉତ୍ତମ ପରାମର୍ଶ - ଆଚାର୍ଯ୍ୟ ଜେ. କିଥ୍ - ୧୮୧୮ ।
୮. ରାମ, ହରି ଏବଂ ସାଧୁ ମଧ୍ୟରେ କଥାବାର୍ତ୍ତା - ଆଚାର୍ଯ୍ୟ ଜେ. କିଥ୍ - ୧୮୧୮ ।
୯. ବିଦ୍ୟାଳୟ ପାଠ୍ୟ (୧ମ) - ୧୮୧୮ ।
୧୦. ବିଦ୍ୟାଳୟ ପାଠ୍ୟ (୨ୟ) - ୧୮୧୯ ।
୧୧. ଜଣେ ୟୁରୋପୀୟ ଓ ଦେଶୀୟ ମଧ୍ୟରେ ମଧ୍ୟରେ କଥାବାର୍ତ୍ତା - ୧୮୧୯ ।
୧୨. ଈଶ୍ୱରଙ୍କର ପ୍ରକୃତି ସମ୍ପର୍କରେ - ୧୮୧୯ ।
୧୩. ସୁସମାଚାର ପତ୍ରିକା (ଇଂରାଜୀ ଓ ଓଡ଼ିଆ ଭାଷାରେ) - ୧୮୧୯ ।
୧୪. ଧର୍ମଗୀତ ସଂକଳନ - ୧୮୨୦ ।
୧୫. ବିଦ୍ୟାଳୟରେ ପାଠ୍ୟ ନିମନ୍ତେ ଧର୍ମ ଶାସ୍ତ୍ରରୁ ସଂଗୃହୀତ ପାଠ୍ୟ - ୧୮୨୦ ।
୧୬. ଧର୍ମ ସମ୍ବନ୍ଧୀୟ କଥାବାର୍ତ୍ତା - (ଇଂରାଜୀ ଓ ଓଡ଼ିଆ ଭାଷାରେ) - ୧୮୨୧ ।
୧୭. ସୁସମାଚାର ପତ୍ରିକାରୁ ସଂଗୃହୀତ ପାଠ୍ୟ - ୧୮୨୧ ।
୧୮. ଖ୍ରୀଷ୍ଟଙ୍କର ଆଶ୍ଚର୍ଯ୍ୟ କ୍ରିୟା - ୧୮୨୨ ।
୧୯. ଖ୍ରୀଷ୍ଟଙ୍କର ସର୍ବସାଧାରଣଙ୍କ ସହିତ ଆଳାପ - ୧୮୨୨ ।
୨୦. ଯୀଶୁଖ୍ରୀଷ୍ଟଙ୍କର ଉଦାହରଣମାଳା - ୧୮୨୨ ।
୨୧. ଧର୍ମ ସମ୍ବନ୍ଧୀୟ କଥାବାର୍ତ୍ତା (ପ୍ରଥମ ଭାଗ) - ୧୮୨୨ ।
୨୨. ଧର୍ମ ସମ୍ବନ୍ଧୀୟ କଥାବାର୍ତ୍ତା (ଦ୍ୱିତୀୟ ଭାଗ) - ୧୮୨୨ ।
୨୩. ଉଇଲିୟମ୍ କେରୀଙ୍କର ଜୀବନୀ - ୧୮୨୨ ।
୨୪. ଚିତ୍ର କୋଠରୀ - ୧୮୨୨ ।
୨୫. ପାର୍ବତ୍ୟ ଉପଦେଶ (ଇଂରାଜୀ ଓ ବଙ୍ଗଳାରେ) ।
୨୬. ଖ୍ରୀଷ୍ଟଙ୍କର ମୃତ୍ୟୁ ।
୨୭. ସର୍ବୋଚ୍ଚ ସତ୍ୟ ।
୨୮. ଆଚାର୍ଯ୍ୟ ସି.ପିଫାର୍ଡଙ୍କର ଜୀବନୀ ଇତ୍ୟାଦି ।

## ଚର୍ଚ୍ଚ ମିଶନାରୀ ସୋସାଇଟୀ ପ୍ରକାଶନ:

କଲିକତାରେ ଚର୍ଚ୍ଚ ମିଶନାରୀ ସୋସାଇଟୀ ପକ୍ଷରୁ ଏକ ପ୍ରେସ୍ ସ୍ଥାପନ କରାଯାଇ ବହୁଦିନ ପର୍ଯ୍ୟନ୍ତ ବିଭିନ୍ନ ପ୍ରଚାର ପତ୍ର ମିଶନାରୀ ପୁସ୍ତକାବଳୀ ପ୍ରକାଶନ କରାଯାଉଥିଲା । ଏହି ଅନୁଷ୍ଠାନ ପକ୍ଷରୁ ପ୍ରକାଶ ପାଇଥିବା କରାଯାଉଥିଲା । ଏହି ଅନୁଷ୍ଠାନ ପକ୍ଷରୁ ପ୍ରକାଶ ପାଇଥିବା ବିଭିନ୍ନ ପ୍ରକାଶନ ଗୁଡିକ ହେଲା - ଧର୍ମଶାସ୍ତ୍ର ସଂଳାପ, ଦୈବୀ କଥନ, ପବିତ୍ର ଶାସ୍ତ୍ରର ସାରମର୍ମ, ଆବ୍ରାହାମଙ୍କ ଇତିହାସ, ଜଣେ ମାତା ଓ କନ୍ୟା ମଧ୍ୟରେ କଥୋପକଥନ ଇତ୍ୟାଦି ।

**କଲିକତା ଖ୍ରୀଷ୍ଟିୟାନ୍ ଟ୍ରାକ୍ଟ୍ ଆଣ୍ଡ ବୁକ୍ ସୋସାଇଟୀ :**

୧୮୨୩ ମସିହା ମାର୍ଚ୍ଚ ମାସରେ କଲିକତାଠାରେ ଖ୍ରୀଷ୍ଟିୟାନ ଧର୍ମର ବିଭିନ୍ନ ଶାଖାର କେତେକ ମିଶନାରୀ ଏକତ୍ରିତ ହୋଇ ଏକ ସୋସାଇଟୀ ଗଠନ କଲେ । ଯାହାର କାର୍ଯ୍ୟଥିଲା ବିଭିନ୍ନ ଧର୍ମୀୟ ପ୍ରଚାରପତ୍ରର ବହୁଳ ପ୍ରଚାର କରିବା । ଏହି ଉଦ୍‌ଯୋଗ ପୂର୍ଣ୍ଣ କାର୍ଯ୍ୟନିମନ୍ତେ ସୋସାଇଟୀ ପକ୍ଷରୁ ଏକ କମିଟୀ ଗଠନ କରାଯାଇଥିଲା । ଏହି କମିଟୀର କାର୍ଯ୍ୟଥିଲା ଟ୍ରାକ୍ଟ୍ ପ୍ରକାଶନ ଓ ବିତରଣ ନିମନ୍ତେ ଅର୍ଥ ସଂଗ୍ରହ କରିବା, କିନ୍ତୁ ପରିସ୍ଥିତି ଦୃଷ୍ଟିରୁ ଏହା ବାତିଲ କରାଗଲା । ଏବଂ ବେଙ୍ଗଲ ଅକ୍ଜିଲିୟାରୀ ଆଦି ଲଣ୍ଡନ ମିଶନାରୀ ସୋସାଇଟୀ ଏବଂ କଲିକତା ବ୍ୟାପଟିଷ୍ଟ ମିଶନାରୀ ସୋସାଇଟୀ ୫୦୦ ଟଙ୍କା ଦାନ କରିଥିଲେ । ଏହା ବ୍ୟତୀତ ବିଭିନ୍ନ ପ୍ରଚାର ପତ୍ର ମଧ୍ୟ ବିତରଣ ନିମନ୍ତେ ଦାନ କରିଥିଲେ ।

୧୮୨୩ ମସିହାରେ ପ୍ରଥମ ଟ୍ରାକ୍ଟ୍ ବା ପ୍ରଚାର ପତ୍ର ମୁଦ୍ରିତ ହେଲା - **ଆମ୍ଭମାନଙ୍କର ପ୍ରଭୁଙ୍କର ଆଶ୍ଚର୍ଯ୍ୟ କ୍ରିୟା** । ଏହା ଏକ ପ୍ରଶ୍ନୋତ୍ତରମୂଳକ ପ୍ରଚାର ପତ୍ର । ଏହାପରେ କିଥ୍‌ଙ୍କର ପ୍ରଶ୍ନୋତ୍ତରମୂଳକ ଏକ ପ୍ରଚାର ପତ୍ର ପ୍ରକାଶ ପାଇଲା । ଏହି ବର୍ଷ ପିୟର୍ସନଙ୍କର ପ୍ରଶ୍ନୋତ୍ତରମୂଳକ ପ୍ରଚାରପତ୍ରର ପ୍ରାୟ ୨୦୦୦ ନକଲ ମୁଦ୍ରିତ ହୋଇଥିଲା । ଏହି ତିନୋଟି ପ୍ରଚାରପତ୍ର ମୁଖ୍ୟତଃ ବିଭିନ୍ନ ଖ୍ରୀଷ୍ଟିୟାନ୍ ଧର୍ମାବଲମ୍ବୀମାନଙ୍କଦ୍ୱାରା ପରିଚାଳିତ ହୋଇଥିଲା ଦେଶୀୟ ବିଦ୍ୟାଳୟମାନଙ୍କରେ ପ୍ରଚଳନ ନିମନ୍ତେ ମୁଦ୍ରିତ ହୋଇଥିଲା ।

ଏହା ବ୍ୟତୀତ ସାଧାରଣରେ ପ୍ରାର୍ଥନା ନିମନ୍ତେ ଉପଯୁକ୍ତ କେତେକ ଧର୍ମସଂଗୀତ, ପ୍ରଭୁଭୋଜ ସମ୍ପର୍କରେ ଲିଖିତ ଏକ ପ୍ରଚାରପତ୍ର, ଆସୁଥିବା କ୍ରୋଧରୁ ରକ୍ଷା ପାଇବା ନିମନ୍ତେ **ଯୀଶୁଖ୍ରୀଷ୍ଟ ଏକମାତ୍ର ଆଶ୍ରୟ** ମୁଦ୍ରିତ ହୋଇଥିଲା । ୧୮୨୩ ମସିହାରୁ ୧୮୬୯ ମସିହା ମଧ୍ୟରେ ବହୁଳ ପରିମାଣରେ ପ୍ରଚାର ପତ୍ର ଓ ପୁସ୍ତକ ପ୍ରକାଶ ପାଇଥିଲା । *(ପ୍ରଚାର ପତ୍ର ଓ ପୁସ୍ତକଗୁଡ଼ିକର ସାରଣୀ ନିମନ୍ତେ Catalogue of the Christian vernacular literature of India -1870, John Murdoch, p. 14-21 ଅବଶ୍ୟ ଦ୍ରଷ୍ଟବ୍ୟ ।)*

**ଦି ଭର୍ଣ୍ଣାକୁଲାର୍ କମିଟୀ ଫର୍ ପ୍ରମୋଟିଙ୍ଗ୍ ଖ୍ରୀଷ୍ଟିୟାନ୍ ନଲେଜ୍ ର ପ୍ରକାଶନ:**

ଦି ଭର୍ଣ୍ଣାକୁଲାର୍ କମିଟୀ ଫର୍ ପ୍ରମୋଟିଙ୍ଗ୍ ଖ୍ରୀଷ୍ଟିୟାନ୍ ନଲେଜ୍ ୧୮୬୧ ମସିହାରେ ଗଠିତ ହୁଏ, ଏହି କମିଟୀ ପକ୍ଷରୁ ନିମ୍ନଲିଖିତ ମିଶନାରୀ ସାହିତ୍ୟ ପ୍ରକାଶ ପାଇଥିଲା ।

ରାଜଦୂତ, ଦୈନିକ ଟୀକା, ପ୍ରାର୍ଥନା ସମାଚାର ପତ୍ର, ମାଦାଗାସ୍କରରେ ଖ୍ରୀଷ୍ଟଧର୍ମ, ଗୀର୍ଜ୍ଜା ସମ୍ପର୍କୀତ ପ୍ରଶ୍ନୋତ୍ତରର ପ୍ରଥମ ସୋପାନ, ରାଜ ପ୍ରାସାଦ, ଦୀପକ ବା ସତ୍ୟ ଧର୍ମ ସମ୍ପର୍କରେ ପ୍ରଶ୍ନୋତ୍ତର, ବଙ୍ଗଳା ଭାଷାରେ ଗୀର୍ଜ୍ଜାରେ ଗାନ କରାଯିବା ନିମନ୍ତେ ସଂଗୀତାବଳୀ,

ଧର୍ମପୁସ୍ତକ ଇତିହାସର ରଙ୍ଗୀନ୍ ସଂସ୍କରଣ (ବାରଖଣ୍ଡ) ଓ ଧର୍ମପୁସ୍ତକରେ ବର୍ଣ୍ଣିତ ବିଭିନ୍ନ ସ୍ଥାନଗୁଡ଼ିକର ରଙ୍ଗୀନ୍ ସଂସ୍କରଣ (ବାରଖଣ୍ଡ) ।

## ବିଶପ କଲେଜ୍‌ର ପ୍ରକାଶନ:

ବିଶପ୍ କଲେଜ୍‌ର ସ୍ଥାପନା ବିଷୟରେ ଲେଖାଯାଏ - Bishop's College, Calcutta.—This institution was devised by bishop Middleton, in 1820, for the purpose of educating native and European Christians in the doctrines of the English Church, so as to fit them for the offices of schoolmasters, catechists and priests, for translating the Scriptures and Common Prayer, and for receiving missionaries sent from England before they were appointed to their respective stations. This society cordially entered into the views of the learned prelate, and the Society for promoting Christian Knowledge contributed £5000 to the building, and a similar donation was received from the Church Missionary Society, and more than £50,000 were collected in England in consequence of a royal letter authorizing a general contribution.

*(The Origin and History of Missions - By Thomas Smith, John Overton Choules, p.558, 1832)*

ବିଶପ୍ କଲେଜ୍‌ର ପକ୍ଷରୁ ପ୍ରକାଶିତ ବିଭିନ୍ନ ପୁସ୍ତକ ମଧ୍ୟରେ ସାଧାରଣ ପ୍ରାର୍ଥନାର ପୁସ୍ତକ, ପ୍ରାର୍ଥନା ପୁସ୍ତକର ସଂକ୍ଷିପ୍ତ ସଂସ୍କରଣ, ବାଇବଲର ଇତିହାସ, ଯୁଷଫର ବୃତ୍ତାନ୍ତ, ଦୃଷ୍ଟି ଦିଅ, ପ୍ରଭୁଭୋଜ ସମ୍ପର୍କରେ, ଧର୍ମଶାସ୍ତ୍ର ସମ୍ପର୍କରେ ପ୍ରଶ୍ନୋତ୍ତର, ମୂର୍ତ୍ତିପୂଜା ସମ୍ପର୍କରେ ଶାସ୍ତ୍ରର ନାସ୍ତିବାଚକ ଉକ୍ତି, ଧ୍ୟାନ ଓ ପ୍ରାର୍ଥନା, ଖ୍ରୀଷ୍ଟଙ୍କର ଉଦାହରଣମାଳା, ଟ୍ରିମରଙ୍କର ବାଇବଲ ଇତିହାସ, ଶିଶୁମାନଙ୍କ ନିମନ୍ତେ ଦୈବୀ ଓ ନୀତିମୂଳକ କବିତା, ଯିହୁଦୀମାନଙ୍କର ଇତିହାସ, ପିଲାମାନଙ୍କର ନିମନ୍ତେ ପ୍ରାର୍ଥନା, ସାଧୁ ପାଉଲଙ୍କର ଜୀବନୀ, ମେରୀଙ୍କର ବୃତ୍ତାନ୍ତ ଓ ଈଶ୍ୱର ସବୁ ଦେଖନ୍ତି ଇତ୍ୟାଦି ପ୍ରଧାନ ।

## ବଙ୍ଗଳା ଖ୍ରୀଷ୍ଟିୟାନ୍ ମିଶନାରୀ ପତ୍ରିକା:

ବଙ୍ଗଳା ଖ୍ରୀଷ୍ଟିୟାନ୍‌ର ପତ୍ରିକା ମଧ୍ୟରେ ଗସ୍‌ପେଲ୍ ମାଗାଜିନ୍, ଦିଗଦର୍ଶନ, ଇଭାଞ୍ଜେଲିଷ୍ଟ, ଉପଦେଶକ, ସତ୍ୟାର୍ଣ୍ଣବ, ଅରଣୋଦୟ, ସତ୍ୟପ୍ରଦୀପ ଓ ଖ୍ରୀଷ୍ଟିୟାନ୍ ପାଞ୍ଜି ମୁଖ୍ୟସ୍ଥାନ ଅଧିକାର କରିଛି ।

ପ୍ରଥମ ବଙ୍ଗଳା ପତ୍ରିକା ଦିଗଦର୍ଶନ ଜନ୍ କ୍ଲର୍କ ମାର୍ଶମାନଙ୍କ ଦ୍ୱାରା ଶ୍ରୀରାମପୁରଠାରେ ପ୍ରକାଶିତ ହୋଇଥିଲା । ଏହା ମୁଖ୍ୟତଃ ବିଜ୍ଞାନ, ଇତିହାସ ଓ ସାହିତ୍ୟ ସମ୍ପର୍କୀତ ଥିଲା । କିନ୍ତୁ, ପ୍ରଥମ ମିଶନାରୀ ପତ୍ରିକା ହେଉଛି, ଗସ୍‌ପେଲ୍ ମାଗାଜିନ୍ । ଏହା ୧୮୧୯ ମସିହାରେ ଲଣ୍ଡନ ମିଶନାରୀ ସୋସାଇଟୀ ପକ୍ଷରୁ ପ୍ରକାଶିତ ହୋଇଥିଲା । ବଙ୍ଗଳାର ଦେଶୀୟ ବଙ୍ଗାଳୀ ଅଧିବାସୀମାନେ, ଯେଉଁମାନେ ଇଂରାଜୀ ବୁଝନ୍ତି, ସେମାନଙ୍କ ନିମନ୍ତେ ପ୍ରାୟ ପାଞ୍ଚଶହ କପି ଇଂରାଜୀ ଓ ବଙ୍ଗଳା ଭାଷାରେ ମୁଦ୍ରିତ ହୋଇଥିଲା । ଗ୍ରାମାଞ୍ଚଳରେ ଏହାର ବଙ୍ଗଳା ସଂସ୍କରଣ ପ୍ରାୟ ଦୁଇ ହଜାର କପି ମୁଦ୍ରିତ ହୋଇ ବଣ୍ଟନ କରାଯାଇଥିଲା । ଏହି ପତ୍ରିକା ୧୮୨୩ ମସିହା ପର୍ଯ୍ୟନ୍ତ ଚାଲିଥିଲା ।

୧୮୪୩ ମସିହାରେ ଆଚାର୍ଯ୍ୟ ଜେ. ରବିନ୍‌ସନ୍‌ଙ୍କ ସମ୍ପାଦନାରେ 'ଇଭାଞ୍ଜେଲିଷ୍ଟ' ନାମରେ ଏକ ପତ୍ରିକା ପ୍ରକାଶ ପାଇଥିଲା । ଏହାକୁ ପ୍ରକାଶ କରିବା ଦିଗରେ ବ୍ୟାପଟିଷ୍ଟ ଆସୋସିଏସନ୍ ପରାମର୍ଶ ଦେଇଥିଲେ । ଏହା ପ୍ରାୟ ତିନି ବର୍ଷ ପର୍ଯ୍ୟନ୍ତ ଚାଲିଥିଲା । ୧୮୪୭ ମସିହାରେ ପ୍ରକାଶିତ ହେଲା 'ଉପଦେଶକ' । ଏହା ପ୍ରାୟ ୧୮୫୭ ମସିହା ପର୍ଯ୍ୟନ୍ତ ଏହା ପ୍ରକାଶ ପାଉଥିଲା । ଏହାର ସମ୍ପାଦକ ଥିଲେ ଆଚାର୍ଯ୍ୟ ଜେ. ଓ୍ୱାଙ୍ଗଲ ଏହା ପ୍ରାୟ ୧୮୫୭ ମସିହା ପର୍ଯ୍ୟନ୍ତ ପ୍ରକାଶ ପାଉଥିଲା । ୧୮୫୭ ମସିହାରେ ଏହାର ସମ୍ପାଦକ ଓ୍ୱାଙ୍ଗଲ ସ୍ୱଦେଶ ଫେରି ଯିବାରୁ ଏହାର ପ୍ରକାଶନ ବନ୍ଦ ରହିଥିଲା । ପୁନଶ୍ଚ, ୧୮୬୩ ମସିହାରେ ସେ ଭାରତ ପ୍ରତ୍ୟାବର୍ତ୍ତନ କରିବାରୁ ଏହାର ପୁନଃ ପ୍ରକାଶନ ଆରମ୍ଭ ହୋଇଥିଲା । ମାତ୍ର, ଏହା ୧୮୬୫ ମସିହା ବେଳକୁ ନିଜର ଅସ୍ତିତ୍ୱ ହରାଇ ଥିଲା ।

୧୮୪୯ ମସିହାରେ ଚର୍ଚ୍ଚ ଅଫ୍ ଇଂଲଣ୍ଡର ମିଶନାରୀମାନଙ୍କ ସମ୍ପାଦନାରେ ପ୍ରକାଶ ପାଇଥିଲା 'ସତ୍ୟାର୍ଣ୍ଣବ' ନାମରେ ପତ୍ରିକା । ଏହାର ପ୍ରାୟ ପାଞ୍ଚଗୋଟି ସଂଖ୍ୟା ପ୍ରକାଶିତ ହୋଇଥିଲା ।

୧୮୫୬ ମସିହା ଅଗଷ୍ଟ ମାସରେ 'ଅରଣୋଦୟ' ନାମରେ ଏକ ଅର୍ଦ୍ଧମାସିକ ପତ୍ରିକା ପ୍ରକାଶ ପାଇଥିଲା । ଏହା କଲିକତା ଟ୍ରାକ୍ଟ୍ ସୋସାଇଟୀ ପକ୍ଷରୁ ପ୍ରକାଶିତ ହେଉଥିଲା । ଏହାର ସମ୍ପାଦକ ଥିଲେ ଲାଲ୍ ବିହାରୀ ଦେ । ଏହାର ମାସିକ ଦେୟ ଥିଲା ଏକ ଟଙ୍କା ।

୧୮୬୦ ମସିହାରେ ଖ୍ରୀଷ୍ଟିୟାନ୍ ଭର୍ଣ୍ଣାକ୍ୟୁଲାର ଏଡୁକେଶନ ଦ୍ୱାରା ସତ୍ୟ ପ୍ରଦୀପ ନାମକ ଏକ ମାସିକ ପତ୍ରିକା ପ୍ରକାଶିତ ହେଲା । ଏହା ଯୁବଗୋଷ୍ଠୀ ନିମନ୍ତେ ଉଦ୍ଦିଷ୍ଟ ଥିଲା । ୧୮୬୪ ମସିହା ପର୍ଯ୍ୟନ୍ତ ଏହା ପ୍ରକାଶିତ ହେଉଥିଲା ।

୧୮୪୫ ମସିହାରେ କଲିକତା ଟ୍ରାକ୍ଟ୍ ସୋସାଇଟୀ ପକ୍ଷରୁ ଖ୍ରୀଷ୍ଟିୟାନ୍ ପାଞ୍ଜି ସମ୍ବଳିତ ଗୋଟିଏ ପତ୍ରିକା ପ୍ରକାଶ ପାଇଲା । ପ୍ରଥମ ବର୍ଷ ଚାରିଶହ କପି ପ୍ରକାଶ ପାଇଥିଲା । ଏହାର ବିକ୍ରୟ ମୂଲ୍ୟ ଥିଲା ଚାରି ଅଣା ।

## ୨. ଅସମିୟା ମିଶନାରୀ ସାହିତ୍ୟ:

ଆସାମରେ ଶ୍ରୀରାମପୁର ମିଶନାରୀମାନେ ୧୮୨୯ ମସିହାରେ ମିଶନାରୀ କାର୍ଯ୍ୟ ଆରମ୍ଭ କରିଥିଲେ । ସେହିପରି ଆମେରିକାନ୍ ବ୍ୟାପଟିଷ୍ଟ ମିଶନ ଏହିଠାରେ ୧୮୩୫ ମସିହାରେ କାର୍ଯ୍ୟ ଆରମ୍ଭ କରିଥିଲା । ୧୮୬୨ ମସିହା ବେଳକୁ ଆସାମ ମିଶନାରୀ କାର୍ଯ୍ୟର ପରିସଂଖ୍ୟାନ ଏହିପରି ଥିଲା ।

| | |
|---|---|
| ଆମେରରକୀୟ ଏବଂ ୟୁରୋପୀୟ ମିଶନାରୀ | ୦୬ ଜଣ |
| ଦେଶୀୟ/ସ୍ଥାନୀୟ ପ୍ରଚାରକ | ୦୪ ଜଣ |
| କମ୍ୟୁନିକାନ୍ଷ୍ସ୍ | ୮୪ ଜଣ |
| ବିଦ୍ୟାଳୟରେ ଛାତ୍ରସଂଖ୍ୟା | ୧୯୦ ଜଣ |

୧୮୪୯ ମସିହାରେ ଉଇଲିୟମ୍ ଗାମେଲ୍ ଆସାମ ମିଶନାରୀ କାର୍ଯ୍ୟର ଏକ ପରିସଂଖ୍ୟାନ ପ୍ରଦାନ କରିଛନ୍ତି:

ଆସାମରେ ତିନିଗୋଟି ମିଶନାରୀ ଷ୍ଟେସନ ଥିଲା, ଯଥା: ଶିବସାଗର, ନୋଗଙ୍ଗ ଓ ଗୌହାଟୀ । ସେଥିରେ ଛ'ଅ ଜଣ ମିଶନାରୀ, ଆଠ ଜଣ ମହିଳା ମିଶନାରୀ, ୦୨ଜଣ ଦେଶୀୟ ପ୍ରଚାରକ, ତିନି ଗୋଟି ଗୀର୍ଜା, ଏକୋଇଶି ଜଣ ବାପ୍ତିଜିତ ହୋଇଥିବା ବ୍ୟକ୍ତି, କୋଡ଼ିଏ ଗୋଟି ବିଦ୍ୟାଳୟ, ଏଥିରେ ପ୍ରାୟ ୭୦୦ ଛାତ୍ରସଂଖ୍ୟା ଥିଲେ ।

*(A History of Amarican Baptist Missionary Society - William Gammel, p. 349)*

### ଆସାମରେ କାର୍ଯ୍ୟ କରିଥିବା ମିଶନାରୀଗଣ:

### ଶିବସାଗର:

କ. ନାଥନ ବ୍ରାଉନ - ବ୍ରାଉନ ୧୮୩୧ ମସିହାରେ *Amarican Baptist Missionary Society* ଦ୍ୱାରା ମିଶନାରୀ ଭାବରେ ଗୃହୀତ ହୋଇଥିଲେ । ସେ ଥିଲେ ଆସାମୀ ଭାଷାର ପ୍ରଚାରକ ।

ଖ. ଏଲିଜା ଡବ୍ଲ୍ୟୁ ବଲାର୍ଡ଼ ବି - ଏଲିଜା ୧୮୩୧ ମସିହାରେ *Amarican Baptist Missionary Society* ଦ୍ୱାରା ମିଶନାରୀ ଭାବରେ ଗୃହୀତ ହୋଇଥିଲେ । ସେ ଥିଲେ ଆସାମୀ ଭାଷାର ପ୍ରଚାରିକା ।

ଗ. ଅଲିଭର ଟି କଟର – ୧୮୩୧ ମସିହାରେ *Amarican Baptist Missionary Society* ଦ୍ୱାରା ମିଶନାରୀ ଭାବରେ ଗୃହୀତ ହୋଇଥିଲେ । ସେ ଥିଲେ ଜଣେ ମୁଦ୍ରାକର *(Printer)* ଓ

ଘ. ହ୍ୟାରିୟଟ୍ ବି.ଲ.ସି - ହ୍ୟାରିୟଟ୍ ୧୮୩୧ ମସିହାରେ *Amarican Baptist Missionary Society* ଦ୍ୱାରା ମିଶନାରୀ ଭାବରେ ଗୃହୀତ ହୋଇଥିଲେ । ସେ ଆସାମୀ ଭାଷାର ପ୍ରଚାରକ ଥିଲେ । ପରବର୍ତ୍ତୀ ସମୟରେ ସେ ଆମେରିକା ଫେରି ଯାଇଥିଲେ ।

**ନୌଗଙ୍ଗ :**

କ. ମାଇଲସ୍ ବ୍ରୋନ୍‌ସନ୍ - ୧୮୩୬ ମସିହାରେ ଆସାମରେ ମିଶନାରୀ କାର୍ଯ୍ୟ ନିମନ୍ତେ ନିଯୁକ୍ତି ପାଇଥିଲେ ଏବଂ ପରବର୍ତ୍ତୀ ସମୟରେ ଯୁକ୍ତରାଷ୍ଟ୍ର ଆମେରିକାକୁ ଫେରିଯାଇଥିଲେ ।

ଖ. ରୁଥ ଏମ୍ ଲୁକାସ୍ ବି - ୧୮୩୬ ମସିହାରେ ଆସାମରେ ମିଶନାରୀ କାର୍ଯ୍ୟ ନିମନ୍ତେ ନିଯୁକ୍ତି ପାଇଥିଲେ ଏବଂ ପରବର୍ତ୍ତୀ ସମୟରେ ଯୁକ୍ତରାଷ୍ଟ୍ର ଆମେରିକାକୁ ଫେରିଯାଇଥିଲେ ।

ଗ. ଇରା କେ. ଷ୍ଟଡାର୍ଡ୍ - ୧୮୪୭ ମସିହାରେ ଆସାମରେ ମିଶନାରୀ କାର୍ଯ୍ୟ ନିମନ୍ତେ ନିଯୁକ୍ତି ପାଇଥିଲେ ଓ

ଘ. ଡୃଶିଲା ସି ଆଲେନ୍ ଏସ୍ - ୧୮୪୭ ମସିହାରେ ଆସାମରେ ମିଶନାରୀ କାର୍ଯ୍ୟ ନିମନ୍ତେ ନିଯୁକ୍ତି ପାଇଥିଲେ ।

**ଗୌହାଟୀ :**

କ. ସାଇରସ୍ ବାର୍କର୍ - ୧୮୩୯ ମସିହାରେ ଆସାମରେ ମିଶନାରୀ କାର୍ଯ୍ୟ ନିମନ୍ତେ ନିଯୁକ୍ତି ପାଇଥିଲେ ।

ଖ. ଜାନେ ୱେଷ୍ଟନ୍ ବି. - ୧୮୩୯ ମସିହାରେ ଆସାମରେ ମିଶନାରୀ କାର୍ଯ୍ୟ ନିମନ୍ତେ ନିଯୁକ୍ତି ପାଇଥିଲେ ।

ଗ. ଆପ୍ଲେଟନ୍ ଏଚ୍ ଡାନ୍‌ଫୋରଥ୍ - ୧୮୪୭ ମସିହାରେ ଆସାମରେ ମିଶନାରୀ କାର୍ଯ୍ୟ ନିମନ୍ତେ ନିଯୁକ୍ତି ପାଇଥିଲେ ଓ

ଘ. ଫ୍ରାନ୍‌ସିସ୍ ଏ. ଷଡ୍‌ଲି ଡି - ୧୮୪୭ ମସିହାରେ ଆସାମରେ ମିଶନାରୀ କାର୍ଯ୍ୟ ନିମନ୍ତେ ନିଯୁକ୍ତି ପାଇଥିଲେ ।

**ଖ. ଅସମିୟା ମିଶନାରୀ ସାହିତ୍ୟର ବିବରଣୀ:**

ଜନ୍ ମର୍ଡ୍‌କ୍ ଆସାମୀ ମିଶନାରୀ ସାହିତ୍ୟର ବହୁ ପୁସ୍ତକର ସନ୍ଧାନ ପାଇନାହାନ୍ତି । ସେଥିପାଇଁ ସେ ୧୮୬୦ରୁ ୧୮୭୦ ମଧ୍ୟରେ ଅର୍ଥାତ୍ ଦଶବର୍ଷ ମଧ୍ୟରେ ପ୍ରକାଶ ପାଇଥିବା ମିଶନାରୀ ପୁସ୍ତକଗୁଡ଼ିକର ସାରଣୀ ପ୍ରଦାନ କରିଛନ୍ତି । କିନ୍ତୁ, ବ୍ଲୁମହର୍ଟ ତାଙ୍କର ସାରଣୀରେ ଅନ୍ୟ କେତେକ ମିଶନାରୀ ସାହିତ୍ୟର ପରିଚୟ ପ୍ରଦାନ କରିଛନ୍ତି: -

୧. ଧରମ୍ ପୁଥିର୍ ବିବରଣ୍ - ଖ୍ରୀଷ୍ଟିୟାନ୍ ଗଟଲର୍ ବାର୍ଥ - ଏହି ପୁସ୍ତକଟି ସି. ଏଚ୍. ହୋସେଲ୍‌ମେୟରଙ୍କ ଦ୍ୱାରା ବାର୍ଥଙ୍କର Bible Stories ରୁ ଆସାମୀ ଭାଷାରେ ଅନୁବାଦିତ ହୋଇଥିଲା । ଏହାର ପୃଷ୍ଠା ସଂଖ୍ୟା ୨୬୦, ପ୍ରକାଶନ ସ୍ଥାନ ଶିବସାଗର, ଏହା ୧୮୫୫ ମସିହାରେ ପ୍ରକାଶିତ ହୋଇଥିଲା ।

୨. ଖ୍ରୀଷ୍ଟିୟାନ୍ ମଣ୍ଡଲୀର୍ ସଂକ୍ଷେପ ବିବରନ୍ - ଏହି ପୁସ୍ତକଟି ସି. ଏଚ୍. ହୋସେଲ୍‌ମେୟରଙ୍କ ଦ୍ୱାରା ଖ୍ରୀଷ୍ଟିୟାନ୍ ଗଟଲର୍ ବାର୍ଥଙ୍କ History of the Christian Churchesର ଜର୍ମାନ୍ ସଂସ୍କରଣରୁ ଆସାମୀ ଭାଷାରେ ଅନୁବାଦିତ ହୋଇଥିଲା । ଏହାର ପୃଷ୍ଠା ସଂଖ୍ୟା ୨୮୪, ପ୍ରକାଶନ ସ୍ଥାନ ଶିବସାଗର, ଏହା ୧୮୬୧ ମସିହାରେ ପ୍ରକାଶିତ ହୋଇଥିଲା ।

୩. ବାଇବଲ୍ - ଶ୍ରୀରାମପୁର ମିଶନାରୀମାନଙ୍କ ଦ୍ୱାରା ମୂଳ ଭାଷାରୁ ଆସାମୀ ଭାଷାରେ ଅନୁବାଦିତ ହୋଇଥିଲା । ପ୍ରକାଶନ ସ୍ଥାନ ଶ୍ରୀରାମପୁର ଏବଂ ପ୍ରକାଶନ ସମୟ ୧୮୨୦ ।

୪. ବାଇବଲ୍ - ଶ୍ରୀରାମପୁର ମିଶନାରୀମାନଙ୍କ ଦ୍ୱାରା ମୂଳ ଭାଷାରୁ ଆସାମୀ ଭାଷାରେ ଅନୁବାଦିତ ହୋଇଥିଲା । ପ୍ରକାଶନ ସ୍ଥାନ ଶ୍ରୀରାମପୁର ଏବଂ ପ୍ରକାଶନ ସମୟ ୧୮୩୩ ।

୫. ବାଇବଲ *(ନୂତନ ନିୟମ)* - ନାଥନ ବ୍ରାଉନ୍‌ଙ୍କ ଦ୍ୱାରା ଆସାମୀ ଭାଷାରେ ଏହା ଅନୁବାଦିତ ହୋଇଥିଲା । ଏହାର ଦ୍ୱିତୀୟ ସଂସ୍କରଣ ଓ ତୃତୀୟ ସଂସ୍କରଣରୁ ଶିବସାଗରରୁ ଯଥାକ୍ରମେ୧୮୪୯ ଓ ୧୮୫୦ ମସିହାରେ ପ୍ରକାଶିତ ହୋଇଥିଲା । ଏହି ସଂସ୍କରଣରେ ଗ୍ରୀୟେସ୍‌ବାକ୍, ନାପ୍, ସ୍କୋଜ୍‌ଙ୍କ ମିଳିକ ପାଠ୍ୟ ଅନୁସାରେ ଅନୂଦିତ ହୋଇଥିଲା । ନାଥନ ବ୍ରାଉନ୍ ଜଣେ ଆମେରୀକାନ୍ ବ୍ୟାପଟିଷ୍ଟ୍ ମିଶନାରୀ ଥିଲେ ।

୬. ବାଇବଲ *(ନୂତନ ନିୟମ)* - ପୃଷ୍ଠା ୪୬୮, ପ୍ରକାଶନ ସ୍ଥାନ କଲିକତା ଏବଂ ପ୍ରକାଶନ ସମୟ ୧୮୮୦ ।

୭. ବାଚା ଶୁଭବାର୍ତ୍ତା - ବାଇବଲ (ନୂତନ ନିୟମ) ନିର୍ବାଚିତ ପଦ ଓ ପର୍ବ - ଅସମୀୟା ଭାଷାରେ ପ୍ରାର୍ଥନା ପୁସ୍ତକ ନିମନ୍ତେ ସୁସମାଚାରରୁ ସଂଗୃହୀତ ପାଠ୍ୟ, ପୃଷ୍ଠା ସଂଖ୍ୟା ୧୦, ଏହା ଶିବସାଗରରୁ ୧୮୫୬ ମସିହାରେ ପ୍ରକାଶିତ ହୋଇଥିଲା ।

୮. କୋନ୍ ଶାସ୍ତ୍ର ପ୍ରମାଣିକ - (What Scriptures are Authentic?) ଏହା ଏକ ଟ୍ରାକ୍‌ଟ୍ । ଏହାର ପୃଷ୍ଠା ସଂଖ୍ୟା ୧୨ ଏହା ଜୟପୁରରୁ ୧୮୧୩ ମସିହାରେ ପ୍ରକାଶିତ ହୋଇଥିଲା ।

୯. ପାପ୍ କ୍ଷେମା ପୋଓ୍ୱା ଏଜାନି - (The Forgiven Women) ଏହି ଟ୍ରାକ୍ଟ୍‌ଟି ଏସ୍. ଆର୍. ଓ୍ୱାର୍ଡ଼ଙ୍କ ଦ୍ୱାରା ପ୍ରଣୀତ ହୋଇଥିଲା । ଏହାର ପୃଷ୍ଠା ସଂଖ୍ୟା ୦୮, ଏହା କଲିକତାରୁ ୧୯୭୯ ମସିହାରେ ପ୍ରକାଶିତ ହୋଇଥିଲା ।

୧୦. ଗୁରୁ ଆହିଲ ଆରୁ ତୋମାକ୍ ମାତିଛେ - ଏହାର ପୃଷ୍ଠା ସଂଖ୍ୟା ୦୮, ଏହା କଲିକତାରୁ ୧୮୭୯ ମସିହାରେ ପ୍ରକାଶିତ ହୋଇଥିଲା ଓ

୧୧. ବାଁରୀର୍ ମିତ୍ର - ଏହାର ପୃଷ୍ଠା ସଂଖ୍ୟା ୧୨, ଏହା ୧୮୭୯ ମସିହାରେ କଲିକତାଠାରୁ ପ୍ରକାଶ ପାଇଥିଲା ।

ଏଥର ଜନ୍ ମର୍ଡ଼କଙ୍କର ଦ୍ୱାରା ପ୍ରସ୍ତୁତ ସାରଣୀ ଲକ୍ଷ୍ୟ କରାଯାଉ । ଅନେକ ପରିଶ୍ରମ ସତ୍ତ୍ୱେ ଅସମୀୟା ମିଶନାରୀ ସାହିତ୍ୟ ସାରଣୀ ପ୍ରସ୍ତୁତକାରୀ ଜନ୍ ମର୍ଡ଼କ ଅସମୀୟା ମିଶନାରୀ ସାହିତ୍ୟର କୌଣସି ସନ୍ଧାନ ନପାଇ ୧୮୬୦ ମସିହାରୁ ୧୯୭୦ ମସିହା ମଧ୍ୟରେ ପ୍ରକାଶିତ ଅସମୀୟା ମିଶନାରୀ ସାହିତ୍ୟର ଏକ ସାରଣୀ ପ୍ରଦାନ କରିଛନ୍ତି । ତାହାକୁ ନିମ୍ନରେ ପ୍ରଦାନ କରାଗଲା ।

କ. ଖ୍ରୀଷ୍ଟଙ୍କର ଉପଦେଶମାଳା, ଖ. ପାର୍ବତ୍ୟ ଉପଦେଶ, ଗ. ସୃଷ୍ଟି ଓ ବିଲୟ, ଘ. ଜଳ ପ୍ଲାବନ, ଙ. ଏକ ପ୍ରଶ୍ନୋତ୍ତର, ଚ. ସତ୍ୟ ଆଶ୍ରୟ, ଛ. କେଉଁ ଶାସ୍ତ୍ର ସତ୍ୟ, ଜ. ଧର୍ମ ସମ୍ବନ୍ଧୀତ ଅଭିଭାଷଣ, ଝ. ପବିତ୍ର ଅବତାର, ଞ. ପରିତ୍ରାଣର ପଥ, ଟ. ଜାତି ସମ୍ପର୍କରେ, ଠ. ଇସଲାମୀୟମାନଙ୍କ ନିକଟକୁ ପତ୍ର, ଡ. ହିନ୍ଦୁମାନଙ୍କ ପ୍ରତିବାଦର ଉତ୍ତର, ଢ. ବର୍ମା ଦେଶୀୟ ଏକ ବାଳିକା କ୍ରିତଦାସୀର କାହାଣୀ, ଣ. ଇସଲାମ ଧର୍ମ ସମ୍ପର୍କରେ କଥାବାର୍ତ୍ତା, ତ. ଆଚାର୍ଯ୍ୟ ସି. ବାର୍କରଙ୍କର ମୃତ୍ୟୁରେ ପ୍ରକାଶିତ ଶୋକବାର୍ତ୍ତା, ଥ. ଜେ. ହାର୍ମସ୍‌ଡେନ୍‌ଙ୍କର ସଂକ୍ଷିପ୍ତ ଜୀବନୀ, ନ. ବାରଟି ବାଲକୋଚିତ ପ୍ରଚାରପତ୍ର,

**ପୁସ୍ତକାବଳୀ:**

କ. ଖ୍ରୀଷ୍ଟଙ୍କର ଜୀବନୀ ଓ ସୁସମାଚାର, ଖ. ଏକ ପରିବ୍ରାଜକର ଭ୍ର[illegible], ଗ. ଅସମୀୟା ଭାଷାରେ ରଚିତ ସଂଗୀତାବଳୀ, ଘ. ସାନ ହେନେରୀ ଓ ତାହାର ବେହେରାର ବୃତ୍ତାନ୍ତ, ଙ. ଫୁଲମଣୀ ଓ କରୁଣା ଓ ଚ. ବାର୍ଥଙ୍କର ବାଇବଲ କାହାଣୀ ।

**ପତ୍ରିକା:**

ଏକ ମାସିକ ପତ୍ରିକା ଅରଣୋଦୟ କେତେକ ବର୍ଷ ପର୍ଯ୍ୟନ୍ତ ପ୍ରକାଶିତ ହେଉଥିଲା ।



# ପରିଶିଷ୍ଟ – କ

# ଓଡ଼ିଆରେ ମୁଦ୍ରିତ କେତେକ ମିଶନାରୀ ପୁସ୍ତକ ଓ ପ୍ରଚାର ପତ୍ର : ଏକ ଦୃଷ୍ଟିପାତ

## କ. ପ୍ରଥମ ଓଡ଼ିଆ ଟ୍ରାକ୍ଟ୍ : ଶ୍ରୀ ଶ୍ରୀ ଗୁଣ୍ଡିଚା ଯାତ୍ରାର ମହାଶ୍ଚର୍ଯ୍ୟ ଫଳ:

୧୮୩୯ ମସିହାରେ ଗୋଟିଏ ମିଶନାରୀ ରିପୋର୍ଟରେ ଲେଖାଯାଏ:

"The *first tract* printed at the Cuttack Press was hastily composed for the Jattra in 1838, and was entitled *"The wonderful advantages of a Pilgrimage to Juggernaut."* The evils of that pilgrimage are there detailed. Many of these tracts were circulated.."

*(Peggs - P.319-20)*

'The Wondeful Advantage of a Pilgrimage to Juggernaut.' ଟ୍ରାକ୍ଟ୍ର ଓଡ଼ିଆ ନାମ ଥିଲା 'ଶ୍ରୀ ଶ୍ରୀ ଗୁଣ୍ଡିଚା ଯାତ୍ରାର ମହାଶ୍ଚର୍ଯ୍ୟ ଫଳ' ଏହାର ପ୍ରଥମ ସଂସ୍କରଣ ୧୮୩୮ ମସିହାରେ ପ୍ରକାଶିତ ହୋଇଥିଲା, ଏହାର ପୃଷ୍ଠା ସଂଖ୍ୟା ଥିଲା ବାର। ୧୮୪୧ ମସିହାରେ ଏହାର ତୃତୀୟ ସଂସ୍କରଣ ପ୍ରକାଶିତ ହୋଇଥିଲା। ସେତେବେଳେ ଏହାର ପୃଷ୍ଠା ସଂଖ୍ୟା ଥିଲା ଛ'ଅ। କିନ୍ତୁ, ଏହି ସଂସ୍କରଣଟି କଲିକତାଠାରେ ମୁଦ୍ରିତ ହୋଇଥିଲା।

ପୁସ୍ତିକାଟିର ପ୍ରଣେତା ପୁସ୍ତକ ଆରମ୍ଭରୁ ପୁସ୍ତକର ବିଷୟବସ୍ତୁ ସମ୍ପର୍କରେ ସୂଚନା ପ୍ରଦାନ କରିଛନ୍ତି-

'ହେ ପ୍ରିୟ ହିନ୍ଦୁ ଭାଇ ଏହି ସମୟରେ ଶ୍ରୀ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ସୌନ୍ଦର୍ଯ୍ୟ ଶ୍ରୀମୁଖ ଦର୍ଶନ କରିବା ପାଇଁ ଅପାର ଅପାର ଲୋକ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରକୁ ଯାତ୍ରା କରିବାରୁ ମହାଶ୍ଚର୍ଯ୍ଯ ଫଳ ଉତ୍ପନ୍ନ ହେଉଅଛନ୍ତି ତାହା ବିଷୟରେ ତୁମ୍ଭର ମନକୁ ପ୍ରବୋଧ କରାଇବା ପାଁଇ ପୁଣି ଯେଉଁ ଯେଉଁ ଯାତ୍ରିମାନେ ବଞ୍ଚିଥାଇ ଆପଣ ଆପଣ ଘରକୁ ନେଉଟି ଯାନ୍ତି। ସେମାନଙ୍କର କୁଟୁମ୍ବାଦି ଲୋକମାନଙ୍କୁ ଜଣାଇବା ପାଁଇ ଏହି ପତ୍ର

ଲେଖାଅଛି, ଯେହେତୁ ଏ ଯାତ୍ରା କରିବାରୁ ଯେବେ ଏଡ଼େ ମହାଶର୍ଯ୍ୟ ଫଳ ହୁଅଇ ତେବେ ଜଗତ ଢାକ ଆସିବାକୁ ଉଚିତ କି ନହୁଅଇ ।

ପ୍ରଥମ ଫଳ । ଏହି ଗୁଣ୍ଡିଚା ଯାତ୍ରା କଲା ଦେହର ଅନେକ କ୍ଲେଶ ଓ ମନର ଅତ୍ୟନ୍ତ ଦୁଃଖ ନିଶ୍ଚେ ହେବ । ଏହାର ପ୍ରମାଣ ସିଦ୍ଧ ହେବା ପାଁଇ ତୁମ୍ଭର ଶାସ୍ତ୍ରକୁ ଦେଖ ଆଉ ବାହୁଡ଼ି ଆଶିବା ଯାତ୍ରିମାନଙ୍କୁଂ ପଚାର ।

*(ଓଡ଼ିଆ ପ୍ରକାଶନ ଓ ପ୍ରସାରଣର ଇତିହାସ - ଶ୍ରୀଧର ମହାପାତ୍ର - ପୃ.୪୪୭)*

ଏହି ପୁସ୍ତିକାଟି ଦେଖିବାର ସୌଭାଗ୍ୟ ମୋହର ହୋଇନାହିଁ ।

## ଖ. ସ୍ୱର୍ଗୀୟ ଯାତ୍ରୀର ବୃତ୍ତାନ୍ତ - ଅନୁବାଦକ ଡକ୍ଟର ଆମୋଷ ସଟନ:

ଜନ୍ ବନିୟାନଙ୍କର 'The Pilgrim's Progress' ବିଶ୍ୱ ସାହିତ୍ୟରେ ଏକ ବହୁ ପଠିତ ଓ ବହୁ ଅନୁଦିତ ପୁସ୍ତକ । ଏହା ପ୍ରଥମେ ଦୁଇ ଭାଗରେ ବିଭକ୍ତ ହୋଇ ଯଥାକ୍ରମେ ୧୬୭୮ ଏବଂ ୧୬୮୪ରେ ପ୍ରକାଶ ପାଇଥିଲା । 'The Pilgrim's Progress' ପୁସ୍ତକଟି ବନିୟାନ୍ ବନ୍ଦୀ ଥିବା ଅବସ୍ଥାର ପଥମ ଭାଗରେ ରଚନା କରିଥିଲେ । ୧୭୨୮ ମସିହାରେ ଦୁଇଟି ଭାଗ ଏକତ୍ର ହୋଇ ପ୍ରକାଶିତ ହେଲା । ଏଠାରେ ଅବଶ୍ୟ ଉଲ୍ଲେଖଯୋଗ୍ୟ ଯେ, ପୃଥିବୀର ପ୍ରୋଟେଷ୍ଟାଣ୍ଟ ଖ୍ରୀଷ୍ଟିୟାନ ମିଶନାରୀମାନେ ଏହାକୁ ପ୍ରାୟତଃ ଅନୁବାଦ କରିଛନ୍ତି । ସେମାନଙ୍କର ଦୃଷ୍ଟିରେ 'The Pilgrim's Progress'ର ସ୍ଥାନ ବାଇବଲର ଠିକ୍ ପରେ ।

ଶ୍ରୀ ପ୍ରଫୁଲ୍ଲ କୁମାର ପାତ୍ରଙ୍କର ଅନୁଦିତ 'ସ୍ୱର୍ଗଯାତ୍ରୀର ବୃତ୍ତାନ୍ତ' ୧୯୨୭ ମସିହାରେ ପ୍ରକାଶି ହୁଏ । ପୁସ୍ତକ ପରିଚୟରେ ଅନୁବାଦକ ଲେଖିଛନ୍ତି :

"ଆଜକୁ ବହୁବର୍ଷ ହେଲା ଜନ ବନିୟନଙ୍କର ପ୍ରସିଦ୍ଧ ସ୍ୱର୍ଗଯାତ୍ରୀ ପୁସ୍ତକର ଓଡ଼ିଆ ଅନୁବାଦ ପ୍ରକାଶିତ ହୋଇ ଆସୁଅଛି । କେବେ ଏହା ପ୍ରଥମେ ପ୍ରକାଶିତ ହୋଇଥିଲା, ପୁଣି ଏଥି ମଧ୍ୟରେ କେତେ ସଂସ୍କରଣ ଛାପା ହୋଇଛି ତାହା ନିର୍ଣ୍ଣୟ କରିବା ସହଜ ନୁହେଁ ।"

*(ସ୍ୱର୍ଗଯାତ୍ରୀର ବୃତ୍ତାନ୍ତ - ଅନୁ. ପ୍ରଫୁଲ୍ଲ କୁମାର ପାତ୍ର, ୧୯୨୭, ଖ୍ରୀଷ୍ଟିୟ ସାହିତ୍ୟ ସମିତି, କଟକ)*

ମନେହୁଏ ଶ୍ରୀଯୁକ୍ତ ପାତ୍ର ସଟନଙ୍କର ପୁସ୍ତକକୁ ଦେଖିନଥିଲେ ବା ଏହାର ପ୍ରକାଶନ ସମ୍ପର୍କରେ ଜ୍ଞାତ ନଥିଲେ ।

### ସଟନଙ୍କର ଅନୁଦିତ ପୁସ୍ତକର ସଂକ୍ଷିପ୍ତ ପରିଚୟ:

ସ୍ୱର୍ଗୀୟ ଯାତ୍ରୀର ବୃତ୍ତାନ୍ତ । ଅର୍ଥାତ୍ ଇହଲୋକରୁ ପରଲୋକଠାରେ ଗମନରେ ବିଷୟରେ । ସନ ୧୬୭୦ ଇଂରାଜୀ ଭାଷାରେ ରଚିଂତ । ସନ ୧୮୩୬ ଉଡ଼ିୟା ଭାଷାରେ ଭାଷାନ୍ତରୀକୃତ ।

The Pilgrim's Progress From the World to that which is to come. Originally written in English by John Bunyan, A.D. 1670. Translated into Oriya by A. Sutton. Calcutta: Printed at the Baptist Mission Press for the Orissa General Baptist Missionary Society. 1838.

## ନିର୍ଘଣ୍ଟ

୧ ଅଧ୍ୟାୟ । ଖ୍ରୀଷ୍ଟିୟାନ ବୋଲି ଜନେ ଯାତ୍ରିକର ଯାତ୍ରା ଆରମ୍ଭ ବିଷୟ ।

୨ ଅଧ୍ୟାୟ । ଖ୍ରୀଷ୍ଟିୟାନକୁ ଧରି ନେଉଟାଇ ଆଣିବାର ଠେଁଟା ଓ ଚଞ୍ଚଳର ଫକ ପର୍ଯ୍ୟନ୍ତେ ଗମନ ଓ ଫେରି ଆସିବାର ।

୩ ଅଧ୍ୟାୟ । ସଂସାର ଜ୍ଞାନୀର ପରାମର୍ଶେ ଖ୍ରୀଷ୍ଟିୟାନର ବିପଥରେ ଗମନ ଓ ପୁଣି ମଙ୍ଗଳପ୍ରଚାରକର ଉପଦେଶରେ ସ୍ୱପଥେ ଫେରଣ ।

୪ ଅଧ୍ୟାୟ । ଖ୍ରୀଷ୍ଟିୟାନର ସାନଦ୍ୱାରରେ ଉପସ୍ଥିତ ଓ ପ୍ରବେଶ ହେବାର ।

୫ ଅଧ୍ୟାୟ । ଅର୍ଥଦାୟକର ଗୃହରେ ଖ୍ରୀଷ୍ଟିୟାନର ଉତ୍ତମ ଅତିଥି ହେବାର ।

୬ ଅଧ୍ୟାୟ । ଦୃଷ୍ଟେଠାର କୃଶ ଦର୍ଶନରେ ଭାର ଖସି ପଡିବାର ।

୭ ଅଧ୍ୟାୟ । ଅବିବେଚକ ଓ ଅଳସୁଆ ଓ ଧୃଷ୍ଟ ବୋଲି ତିନି ନିଦ୍ରାଗ୍ରସ୍ତ ଜନର ସହିତ ସାକ୍ଷାତ କରଣ । ପୁଣି କ୍ରିୟାବଲମ୍ବୀ ଓ କାଛନିକଠାର ଅବଞ୍ଚାଟ ହେଉନ । ପୁଣି କଠିନ ପର୍ବତାରୋହଣ ଓ ଚର୍ମ୍ମ ପୁସ୍ତକ ହଜାଇବାର ଓ ପାଇବାର ବିଷୟ ।

୮ ଅଧ୍ୟାୟ । ସିଂହରସ୍ଥାନରେ ପହୁଞ୍ଚିବାର ଓ ସୁନ୍ଦରୀ ଅଟ୍ଟାଳିକାରେ ଗ୍ରହଣ ହେବାର ।

୯ ଅଧ୍ୟାୟ । ନମ୍ରତା ନାମେ ନିମ୍ନ ଭୂମିରେ ପଶିବାର ଓ ଅପଲ୍ଲ୍ୟନ ବୋଲି ଭୂତର ସଙ୍ଗରେ ମହାଯୁଦ୍ଧର ବିଷୟ ।

୧୦ ଅଧ୍ୟାୟ । ମୃତ୍ୟୁଛାୟା ସ୍ଥାନରେ କଷ୍ଟରପ ଗମନ ଓ ତାହାଠାର ପାରି ହେଉନି ।

୧୧ ଅଧ୍ୟାୟ । ବିଶ୍ୱାସିର ସହିତ ମିଳିବାର ଓ ଆଳାପ କରିବାର ।

୧୨ ଅଧ୍ୟାୟ । ବହୁଭାଷିର ସଙ୍ଗତେ ସାକ୍ଷାତ କରଣ ଓ କଥୋପକଥନ ।

୧୩ ଅଧ୍ୟାୟ । ମଙ୍ଗଳ ପ୍ରଚାରକର ସହିତ ପୁନର୍ବାର ସାକ୍ଷାତ ପ୍ରାପ୍ତ । ମାୟା ବୋଲି ମେଳାରେ ଖ୍ରୀଷ୍ଟିୟାନ ଓ ବିଶ୍ୱାସୀର ତାଡ଼ନା ଓ ଦୁଃଖ ଭୋଗ ଓ ବିଶ୍ୱାସିର ହତ୍ୟା ବିଷୟ ।

୧୪ ଅଧ୍ୟାୟ । କୃତାଶ ନାମେ ଆଣ ଯାତ୍ରିଙ୍କ ସହିତେ ମିଳନ ଓ ଉପପଥିକ ଓ ଅର୍ଥପ୍ରିୟ ଆଦି ଓ ଦେମାସର ସଙ୍ଗତେ କଥାବାର୍ତ୍ତା ।

୧୫ ଅଧ୍ୟାୟ । ଖ୍ରୀଷ୍ଟିୟାନ ଓ କୃତାଶ ବିପଥଗାମୀ ହୋଇ ନୈରାଶ ବୋଲି ମହାବୀର ହସ୍ତରେ ପଡ଼ିବାର ବିଷୟ ।

୧୬ ଅଧ୍ୟାୟ । ରମଣୀୟ ପର୍ବତରେ ମେଷପାଳକ ଗଣର ସ୍ଥାନରେ ପହୁଞ୍ଚିବାର ଓ ସେମାନଙ୍କର ସଙ୍ଗତେ କଥାବାର୍ତ୍ତା ।

୧୭ ଅଧ୍ୟାୟ । ମୂର୍ଖ ନାମରେ ସହିତ ମିଳିବାର ଓ ଡକାଇତରେ ଅଳ୍ପ ପ୍ରତ୍ୟୟିର ଲୁଠ ହେବାର ଓ ଜାଲେ ପାତ୍ରିମାନଙ୍କର ଧାରା ପଡିବାର .....

୧୮ ଅଧ୍ୟାୟ । ନାସ୍ତିକ ସଙ୍ଗତେ ସାକ୍ଷାତ ଓ ମୋହ ଭୂମି ପାର ହେବାର ......

୧୯ ଅଧ୍ୟାୟ । ମୂର୍ଖର ସହିତ ପୁଣି ଆଉ ନାନା କଥାବାର୍ତ୍ତା ।

୨୦ ଅଧ୍ୟାୟ । ପରିଣୟନ ନାମରେ ଦେଶଠାରେ ଉପସ୍ଥିତ ହେବାର । ଓ ମୃତ୍ୟୁ ନଦୀ ପାର ହେବାର । ଓ ମହା ଗୌରବଯୁକ୍ତ ଈଶ୍ୱରଙ୍କର ରାଜଧାନୀରେ ପ୍ରବେଶ ହେବାର ବିଷୟ ।

## ନାନା ସ୍ଥାନ ନାମର ଅର୍ଥ ବିବରଣ ପତ୍ର ଏହି

ଧ୍ୱଂସି ନଗର । ଏହି ପାପୀଷ୍ଟ ଜଗତ ଯେ ଅଗ୍ନିରେ ନଷ୍ଟ ହେବ ।
ସାନଦ୍ୱାର । ମନର ଫେରଣ । ଯଥା ମାଥିଉ ୭ପର୍ବ ୧୩ ପଦ ।
ଭରସାହୀନ ପଙ୍କ । ପାପମୋଚନ ବିଷୟ ଯେ ଆଶଙ୍କା ଓ ନିର୍ଭରସା ।
ଅର୍ଥଦାୟକର ଘର । ଯେଠାରେ ଧର୍ମାତ୍ମା ନାନା ସୁଶିକ୍ଷା ଦିଅନ୍ତି ।
କଠିନ ପର୍ବତ । ସ୍ୱର୍ଗ ପଥରେ ଗମନ ଯେ ନାନା ବାଧା ହୁଅୟ ।
ଦୁଇସିଂହ । ମଣ୍ଡଳୀ ପ୍ରବେଶ ହେବାରେ ଯେ ବାରଣ ଜନ୍ମଇ ।
ସୁନ୍ଦରୀ ଅଟ୍ଟାଳିକା । ପ୍ରଭୁ ଯୀଶୁଖ୍ରୀଷ୍ଟର ଏକଟା ସତ୍ୟ ଧର୍ମ ମଣ୍ଡଳୀ ।
ନମ୍ରତା ସ୍ଥଳୀ । ଘୋର ପରୀକ୍ଷାର ସହିତ ଯୁଦ୍ଧ କରିବାର ।
ମୃତ୍ୟୁଚ୍ଛାୟା ସ୍ଥଳୀ । ମନରେ ପାରମାର୍ଥିକ ଆଲୁଅ ଓ ସୁଖ ନଥିବାର ।
ନିତି ନଗର । ଆପଣ ଆପଣ କ୍ରିୟାରେ ପରିତ୍ରାଣ ଖୋଜିବାର ।
ଶିୟନ ପର୍ବତ । ଈଶ୍ୱରଙ୍କର ସ୍ୱର୍ଗସ୍ଥ କି ପୃଥିବିସ୍ଥ ମଣ୍ଡଳୀର ନାମ ।
ସୀନାଇ ପର୍ବତ । ଯେଠାରେ ମୋଶାରେ ଦଶ ଆଜ୍ଞାଦି ଜଣା ଗଲେ ।
ମାୟା ମେଳା । ଏହି ସଂସାରର ମିଥ୍ୟା ସୁଖ ଓ ଆଚରଣ ।
ସନ୍ଦେହ ଗଡ । ସାଧା ମାର୍ଗ ଛାଡିବାର ଯେ ଭୟ ଓ ସଂଶୟ ଉପସ୍ଥିତ ।
ରମଣୀୟ ପର୍ବତ । ପାରମାର୍ଥିକ ସୁଖ ଓ ବିଶ୍ୱାସରେ ସ୍ୱର୍ଗଦର୍ଶନ ।
ମୋହ ଭୂମି । ଏହି ସଂସାରର ସୁଖ ଧନ ସମ୍ଭ୍ରମାଦି ବୃଦ୍ଧ ହେବାର ।
ପରିଣୟନ ଦେଶ । ଭକ୍ତର ଆତ୍ମା ପ୍ରଭୁର ସଙ୍ଗତେ ମିଳନ ପାଇବାର ।
ଗଭୀର ନଦୀ । ମୃତ୍ୟୁ ଅର୍ଥାତ୍ ଆତ୍ମା ଦେହର ବିଯୋଗ ସମୟ ।

*(ସ୍ୱର୍ଗ ଯାତ୍ରାର ବୃତ୍ତାନ୍ତ; ପୃ.୮)*

## ଗ୍ରନ୍ଥକର୍ତ୍ତାର ନିବେଦନ

ଶୁଣ ହେ ପାଠକ ଜନ ସ୍ୱପନ ବଚନ
ସାର କରି ଅର୍ଥ ବୁଝି ଧର ସାବଧାନ ।
ଅର୍ଥ ବିପରୀତ କଲେ ହେବ ତୋର ମନ ।
ଏଠା ନାନା ତୂଳ ଭ୍ରାନ୍ତି ସେଠା ଘୋର ଦଣ୍ଡ ।୧।
ବାହ୍ୟ ଅର୍ଥ ଅତିଶୟ ନୋହିବ ଆସକ୍ତ
କୋଷ ନ ଭାଙ୍ଗିଲେ ତୋ ନିରାଶ ସାର ପ୍ରାପ୍ତ ।
ଆହେ ପାଠକ ସୁଜନ କ୍ରୀଡାର ବିଧାନ
ଯେବଣ ବିଷୟେ ତହିଁ କର ଅନ୍ତର୍ଧ୍ୟାନ ।୨।
ସାଦୃଶ୍ୟ ବର୍ଣ୍ଣନା ଅବା ଇତିହାସ ରସେ
ନ ମଜ୍ଜିବ ନ ବୁଝିବ କେବେ ଉପହାସେ ।
ବିଦ୍ରୂପରେ ହସି ବା ବିବାଦ ସାଧନ
ଏତେକ ବିରଦ୍ଧ କ୍ରିୟା ଭଣ୍ଡ ମାତ୍ର ଜାଣ ।୩।
ଏବଣ ଯେ ହତବୁଦ୍ଧି ବାଳକର ଲୀଳା
ଶୁଣ ହେ ପାଠକ ତୁମ୍ଭେ କର ଅବହେଳା ।
ମୋହର ଦୃଷ୍ଟାନ୍ତ ବାକ୍ୟ ନିଗୂଢ଼ ସୁସାର
ଆଲୋଚଣ କରି ଅର୍ଥ ବୁଝ ସାରୋଦ୍ଧାର ।୪।
ଟେକି ପରଦା ଭିତରେ କର ହେ ଅନାଇ
ସାଧୁ ଜନଙ୍କ ହିତାର୍ଥେ ଉପମାକୁ ଢାଇ ।
ମନୋଯୋଗ କରି ଭାବ ଅତି ସାବଧାନ
ନାହଂ କ୍ଷମା ପାରି ଏହି ମୋର ନିବେଦନ ।୫।
ସୁବର୍ଣ୍ଣ ରଜତ ମଳ ଯେତେ ଏ ପୁସ୍ତକେ
ବେଗେ ପକା ଦିଅ ଭାଇ ଅତି ସାହସିକେ ।
ପୁଣି ଶୁଭ ଧାତୁ ସବୁ କର ହେ ଆଦର
ମୋର ସାର ଉପଦେଶ ଯତ୍ନ କରି ଧର ।୬।

ସୁବର୍ଣ୍ଣ ସ୍ୱରପ ରପ ପୁସ୍ତକ ଆମ୍ଭର
ଉପରେ ଶୋଭିତ ହୋୟେ ଯଦ୍ୟପି ଅସାର ।
ତେବେ କି ଚୋପାର ହେତୁ ଫଳର ଯେବଣ
ଫଳ ପରିତ୍ୟାଗ କରେ ନାହିଁ କେହୁ ଜନ ।୭ ।
ପୁଣି ମୋର ସ୍ୱପନ ଯେ ଉପଦେଶ ବାଣୀ
ସବୁ ପକାଇଲେ ମାତ୍ର ବୃଥା ଜ୍ଞାନ ମାନି ।
ନ ଜାଣି ଆମ୍ଭର ସିନା ସ୍ୱପନ ଦର୍ଶନ
ଏଥୁ ଅନନ୍ତରେ ହେବ ପୁନଃ ଉତ୍ପନ୍ନ ।୮ ।

ମୂଳ ପୁସ୍ତକରେ 'The Author's Apology'ରେ ୨୨୬ ଗୋଟି ପଦ ରହିଛି । ଏଠାରେ ମୂଳ ପୁସ୍ତକର ପ୍ରଥମ ଅଧ୍ୟାୟରୁ ପ୍ରଥମ ଅନୁଚ୍ଛେଦ ଏବଂ ସଟନଙ୍କର ଓଡ଼ିଆ ଅନୁବାଦ ଦେଖାଇ ଦିଆଯାଉଛି ।

**ମୂଳ ଇଂରାଜୀ :**

As I walk'd through the wilderness of this world, I lighted on a certain place where was a Den, and I laid me down in that place to sleep; and as I slept, I dreamed a Dream. I dreamed, and behold I saw a Man cloathed with Rags, standing in a certain place, with his face from his own house, a Book in his hand, and a great Burden upon his back. I looked, and saw him open the book, and read therein; and as he read, he wept and trembled; and not being able longer to contain, he brake out with a lamentable cry, saying What shall I do ?

*(The Pilgrim's Progres; P.1)*

**ସଟନଙ୍କର ଓଡ଼ିଆ ଅନୁବାଦ :**

ଏଥର ସଟନଙ୍କର ଓଡ଼ିଆ ଅନୁବାଦ ଦେଖାଯାଉ :

ମହାରନ୍ୟରପ ଏହି ଜଗତରେ ଭ୍ରମଣ କର ୨ ଏକ ପର୍ବତର ଗୁହାରେ ଆମ୍ଭେ ଉପସ୍ଥିତ ହୋଇଶୟନ କରି ନିଦ୍ରରେ ପଡ଼ିଲୁଁ । ତହିଂରେ ଦେଖ ଛିଣ୍ଡାବସ୍ତ୍ର ପରିହୀତ ଆପନର ଗୃହଠାର ବିମୁଖ ହାତରେ ଖଣ୍ଡେ ପୁସ୍ତକ ପୁଣି ପୃଷ୍ଠରେ ଏକ ଭାରି ବୋଝ ଏମନ୍ତ ଏକ ଜନକୁ ସ୍ୱପ୍ନଯୋଗରେ ଦେଖିଲୁଁ । ଅନନ୍ତରେ ଦେଖଂ୨ ସେ ଜନକୁ ପୁସ୍ତକ ଫିଟାଇପାଠ କରିବାକୁ ଦେଖିଲୁଁ ପୁଣି ପାଇ କରଂ୨ ସେ କ୍ରନ୍ଦନ କରି ମହା କମ୍ପମାନ ହୋଇଲେ । ଅଧିକ ସହି ନପାରି ସେ ଏକ ମହାବିଳାପ ସବନ୍ଦ କରି ଆମ୍ଭେ କି କରିବା ଏହି କଥା କହି ଡାକ ପକାଇଲେ ।

*(ସ୍ୱର୍ଗୀୟ ଯାତ୍ରୀର ବୃତ୍ତାନ୍ତ - ୧୮୩୮, ପୃ.୧)*

## ଶ୍ରୀ ପ୍ରଫୁଲ କୁମାର ପାତ୍ରଙ୍କର ଅନୁଦିତ "ସ୍ୱର୍ଗଯାତ୍ରୀର ବୃତ୍ତାନ୍ତ"

ମୁଁ ମହାରଣ୍ୟରୂପ ଏହି ଜଗତରେ ଭ୍ରମଣ କରୁ କରୁ ଏକ ସ୍ଥାନରେ ଉପସ୍ଥିତ ହୋଇ ଗୋଟିଏ ଗୁହା ଦେଖିଲି ଓ ସେଥିରେ ଶୟନ କଲି । ନିଦ୍ରାରେ ମୁଁ ସ୍ୱପ୍ନଦେଖିଲି ଯେ ଛିନ୍ନ ବସ୍ତ୍ର ପରିହିତ ଜଣେ ଲୋକ ନିଜ ଗୃହ ଆଡକୁ ପିଠି କରି ଠିଆହୋଇଅଛି; ତାହା ହାତରେ ଖଣ୍ଡିଏ ପୁସ୍ତକ ପୁଣି ପିଠିରେ ଗୋଟିଏ ଭାରୀ ବୋଝ ଅଛି ।

ମୁଁ ଦେଖିଲି ଯେ ସେ ପୁସ୍ତକ ଫିଟାଇ ପଢିବାକୁ ଲାଗିଲା, ପୁଣି ପଢିଲାବେଳେ ଭୟରେ ଥରିଥରି କ୍ରନ୍ଦନ କଲା । ଅବଶେଷରେ ସେ ଆର୍ତ୍ତସ୍ୱରରେ ପାଟି କରି ଉଠିଲା "ହାୟ ! ମୁଁ କଣ କରିବି, ମୁଁ କଣ କରିବି ?"

*(ସ୍ୱର୍ଗଯାତ୍ରୀର ବୃତ୍ତାନ୍ତ - ଅନୁ. ପ୍ରଫୁଲ୍ଲ କୁମାର ପାତ୍ର. ୧୯୨୭. ଖ୍ରିଷ୍ଟିୟ ସାହିତ୍ୟ ସମିତି, କଟକ, ପୃ. ୧)*

ପ୍ରଫୁଲ୍ଲ କୁମାର ପାତ୍ରଙ୍କ ଅନୁବାଦ ସରଳ ଓ ଅଧିକ ମାର୍ଜିତ, ଅଥଚ ଅନେକ ହାସ୍ୟୋଦ୍ଦୀପକ ଭାଷା ସତ୍ତ୍ୱେ ସଟନ ଯେ ଅତୀବ ସରଳ ଭାଷାରେ ଗଳ୍ପର ମୂଳ ଆଖ୍ୟାନ ଅଂଶ ଓଡ଼ିଆ ପାଠକମାନଙ୍କ ନିକଟରେ ଉପସ୍ଥାପନ କରିଛନ୍ତି । ଏଥିରେ ସନ୍ଦେହ ନାହିଁ । ଏଥରେ ସେ କୃତକାର୍ଯ୍ୟ ମଧ୍ୟ ହୋଇଛନ୍ତି । ଯେହେତୁ ସଟନ ଚିନ୍ତା କରିଥିଲେ ଯେ ବଙ୍ଗଳା ଭାଷା ମଧ୍ୟ ଦେଇ ଓଡ଼ିଆ ଭାଷାକୁ ସହଜରେ ଗ୍ରହଣ କରିହେବ । ତେଣୁ ଆଲୋଚ୍ୟ ଅନୁବାଦ ପୁସ୍ତକଟି ମଧ୍ୟରେ ବଙ୍ଗଳା ଭାଷାର ପ୍ରାଧାନ୍ୟ / ପ୍ରଭାବ ଅନୁଭୁତ ହୁଏ ।

## ଗ. ଜଗନ୍ନାଥ ପରୀକ୍ଷା - ମୁକୁନ୍ଦ ଦାସ

ଜଗନ୍ନାଥ ପରୀକ୍ଷା ବା 'Jagannath Tests' ମୁକୁନ୍ଦ ଦାସଙ୍କ ଦ୍ୱାରା ରଚିତ । ଏହା ଓଡ଼ିଆରେ ପ୍ରକାଶିତ ଏକ ଟ୍ରାକ୍‌ଟ୍ । ଏହାକୁ ଟ୍ରାକ୍‌ଟ୍ ବୋଲି କୁହାଯାଉଥିଲେ ମଧ୍ୟ ବାସ୍ତବରେ ଏହା ଏକ କ୍ଷୁଦ୍ର ପୁସ୍ତକ । ୧୮୬୫ ମସିହାରେ ଏହାର ପ୍ରଥମ ସଂସ୍କରଣ ହୋଇଥିଲା ସେତେବେଳେ ଏହାର ପୃଷ୍ଠାସଂଖ୍ୟା ବତ୍ରିଶ ଥିଲା । ଏହାର ୨୩ତମ ସଂସ୍କରଣ ୧୯୨୪ ମସିହାରେ ସଂକଳନ ହୋଇଥିଲା । ୧୯୨୪ ମସିହାରେ ଏହାର ପ୍ରକାଶକ ଥିଲେ ଓଡ଼ିଶା ଖ୍ରୀଷ୍ଟିୟାନ ଲିଟରେଚର କମିଟୀ । ଓଡ଼ିଶା ମିସନ ପ୍ରେସ୍ କଟକଠାରେ ଏହା ମୁଦ୍ରିତ ହୋଇଥିଲା । ୨୩ତମ ସଂସ୍କରଣରେ ଏହି ପୁସ୍ତକରେ ୨୪୦୦୦ ନକଲ ମୁଦ୍ରିତ ହୋଇଥିଲା ଏବଂ ଏହାର ପୃଷ୍ଠା ସଂଖ୍ୟା ଅଣତିରିଶି ଥିଲା । ଏହାର ମୂଲ୍ୟ ଥିଲା ଏକ ପଇସା । ତେବେ ୧୯୨୪ ମସିହା ସଂସ୍କରଣରେ କେତେଗୁଡିକ ଗୀତ ସଂଯୋଗ କରାଯାଇଛି । ଯଥା - "ମୁଁ ଭ୍ରମିଭ୍ରମି ପଥଶ୍ରମୀ ହୋଇଲି ପରିଶ୍ରାନ୍ତ (କୌଣସି ଉତ୍ତର

ବଚନ), କେଡ଼େ ଅନିତ୍ୟ ଅଟଇ ନର ପ୍ରାଣ (ମନୁଷ୍ୟର ଜୀବନ ଅନିତ୍ୟ), ଆହା ନିଗାତ୍ମା କି ବହୁମୂଲ୍ୟ ଧନ (ମନୁଷ୍ୟର ଆତ୍ମା ବହୁମୂଲ୍ୟ), ଯୀଶୁ ପରମବୈଦ୍ୟ କରି କୃପା ନୟନ କର ମୋ ରୋଗ ସୁସ୍ଥ ହେ (ଯୀଶୁ ପରମବୈଦ୍ୟ), 'ଯୀଶୁଖ୍ରୀଷ୍ଟ ନାମତରୀ' (ଯୀଶୁଖ୍ରୀଷ୍ଟ ତ୍ରାଣକର୍ତ୍ତାରୀ) ଏହିପରି ପାଞ୍ଚଗୋଟି କବିତା ପ୍ରଥମ ସଂସ୍କରଣରେ ସଂଯୋଜିତ ହୋଇଥିଲା କି ନାହିଁ, ତାର ଏହି ଲେଖକ ଜାଣେନାହିଁ । କାରଣ ପ୍ରଥମ ସଂସ୍କରଣ ଦେଖିବାର ସୌଭାଗ୍ୟ ତାର ହୋଇନାହିଁ ।

ଜଗନ୍ନାଥ ପରୀକ୍ଷାକୁ ଏକ ଦୀର୍ଘ କବିତା କୁହାଯାଇପାରେ; ଅଥବା ଗୋଟିଏ ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ ରଚିତ ଅଠରଗୋଟି କବିତାର ସମାହାରରେ ସଜ୍ଜିତ ଗୋଟିଏ ମାଳା ସଦୃଶ ବୋଲି ମଧ୍ୟ କୁହାଯାଇପାରେ ।

| | | | |
|---|---|---|---|
| ୧. | ଆଭାଷ | - | ୧୮ ପଦ |
| ୨. | ଜଗନ୍ନାଥଙ୍କ ଉତ୍ପତ୍ତି | - | ୪୮ ପଦ |
| ୩. | ଜଗନ୍ନାଥଙ୍କ ଆକାର ବିଷୟ | - | ୨୩ ପଦ |
| ୪. | ଜଗନ୍ନାଥଙ୍କ ଜୀବନ ଅଛିକି ? (ଏହି ଅଧ୍ୟାୟରେ ୪ ଗୋଟି ସଂସ୍କୃତ ମନ୍ତ୍ର ରହିଛି) | - | ୩୭ ପଦ |
| ୫. | ନେତ୍ରୋତ୍ସବ ବିଷୟ | - | ୨୬ ପଦ |
| ୬. | ଜଗନ୍ନାଥଙ୍କ ନୂଆ କଳେବର | - | ୨୪ ପଦ |
| ୭. | ଜଗନ୍ନାଥଙ୍କ ଚୋରୀ ଓ ଆପଦ | - | ୩୭ ପଦ |
| ୮. | ଜଗନ୍ନାଥ ଏକ କି ଅନେକ | - | ୩୨ ପଦ |
| ୯. | ଜଗନ୍ନାଥଙ୍କ ବିକ୍ରୟ ଓ ମୂଲ୍ୟ | - | ୩୦ ପଦ |
| ୧୦. | ସତ୍ୟ ଜଗନ୍ନାଥଙ୍କ ବିଷୟ | - | ୩୧ ପଦ |
| ୧୧. | ଜଗନ୍ନାଥଙ୍କ ମହାପ୍ରସାଦ ଓ କୈବଲ୍ୟ | - | ୪୫ ପଦ |
| ୧୨. | ଶ୍ରୀଗୁଣ୍ଡିଚା ଯାତ୍ରା | - | ୪୭ ପଦ |
| ୧୩. | ଜଗନ୍ନାଥ ଯାତ୍ରାର ଲାଭ | - | ୫୮ ପଦ |
| ୧୪. | ଶ୍ରୀକ୍ଷେତ୍ର ବର୍ଣ୍ଣନା | - | ୩୨ ପଦ |
| ୧୫. | ସତ୍ୟ ଜଗନ୍ନାଥଙ୍କ ଧାମ ବିଷୟ | - | ୩୩ ପଦ |
| ୧୬. | ସତ୍ୟ ଜଗନ୍ନାଥଙ୍କ ଧାମକୁ ଯିବାର ବାଟ | - | ୫୪ ପଦ |
| ୧୭. | ଜଗନ୍ନାଥ ସ୍ଥାପନର ମୂଳ କାରଣ | - | ୪୦ ପଦ |
| ୧୮. | ଜଗନ୍ନାଥ ସେବାର ଆନ୍ତରିକ ଫଳ | - | ୪୧ ପଦ |

ଏହିପରି ମୋଟ ୬୫୬ ଗୋଟି ପଦ ଏହି ପୁସ୍ତକରେ ରହିଛି । ପୁସ୍ତକର ପ୍ରାରମ୍ଭରୁ କବି ପୁସ୍ତକ ରଚନାର ଉଦ୍ଦେଶ୍ୟ ଜଣାଇଛନ୍ତି 'ଆଭାଷ' ଅଧ୍ୟାୟରେ :

"ଶୁଣ ଶୁଣ ହୋ ବନ୍ଧୁଗଣ । ଶ୍ରୀଜଗନ୍ନାଥ ବିବରଣ ।
ଓଡ଼ିଶା ଦେଶର ମଧ୍ୟର । ପୁରୁଷୋତ୍ତମ ନଗରରେ ।
ବଡ଼ ଦେଉଳେ ପ୍ରଭୁ ପ୍ରାଏ । ଯେଉଁ ଦେବତା ପୂଜା ପାଏ ।
ତାହାର ଦର୍ଶନ କାରଣ । ଆସନ୍ତି ହିନ୍ଦୁ ଯାତ୍ରିଗଣ ।
ତାହାର କୀର୍ତ୍ତି ଶୁଣିବାରୁ । ଆସନ୍ତି ନାନା ଦେଶଠାରୁ ।
ମେଳ ହୋଇଣ ନରନାରୀ । ଆସନ୍ତି ବହୁଦୂର ଚାଲି ।
କେତେ ଆସନ୍ତି ଗାଡ଼ି ଚଢ଼ି । କେତେ ଆସନ୍ତି ଚାଲିଚାଲି ।
ଏହିପରି ନାନା ପ୍ରକାରେ । ଗୁଣ୍ଡ ହୁଅନ୍ତି ଶ୍ରୀକ୍ଷେତ୍ରରେ ।
ହୁଅନ୍ତି ତହିଁ ଉପସ୍ଥିତ । ଦେଖିବା ପାଇଁ ଜଗନ୍ନାଥ ।
ଆହା ଏ କେଡ଼େ ବଡ଼ ଭ୍ରାନ୍ତି । ଜଗନ୍ନାଥ କି ଦେଖାଯାନ୍ତି ।
ଦେଉଳେ ଯେ ମୂର୍ତ୍ତି ଦିଶଇ । ସେ ତ ଜଗନ୍ନାଥ ନୁହଇ ।
ଏହି ବିଷୟର ପ୍ରମାଣ । ଏଥିରେ ମିଳିପାରେ ଜାଣ ।
ନିରାକାର ଯେ ନିରଞ୍ଜନ । ନାହିଁ ତାଙ୍କର ଦରଶନ ।
ଏବେ ସେ ମୂର୍ତ୍ତିର ଉତ୍ପତ୍ତି । ତାହାର ଧାମ ଯାତ୍ରା ଗତି ।
ସମସ୍ତ ପରୀକ୍ଷା କରିବା । ସବୁ କଥା ଜଣାଇ ଦେବା ।
ସତ୍ୟ ଅସତ୍ୟ ଧର୍ମାଧର୍ମ । ବୁଝିବା ଜଗନ୍ନାଥ ମର୍ମ ।
ଏ ଗ୍ରନ୍ଥ କଲେ ଅଧ୍ୟୟନ । ମିଳିବ ସତ୍ୟ ଧର୍ମ ଜ୍ଞାନ ।
ଏଣୁ ସୁଜନେ ଦିଅ ମନ । ବୁଝିବ ଏହି ଗ୍ରନ୍ଥ ଗୁଣ ।

*(ଜଗନ୍ନାଥ ପରୀକ୍ଷା – ଆଭାଷ – ପୃ. ୧)*

ମୁକୁନ୍ଦ ଦାସ ଜଗନ୍ନାଥ ଧର୍ମ, ଉପାସନା, ଇତିହାସ ଓ ସଂସ୍କୃତି ମଧ୍ୟରେ ଐଶ୍ୱରିକ ନିରାକାରବାଦ ଓ ସାର୍ବଭୌମତ୍ୱ ସମ୍ପର୍କରେ ଦର୍ଶାଇଛନ୍ତି । ପରବର୍ତ୍ତୀ ସମୟରେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ ମଧ୍ୟ ବୈଦିକ ତତ୍ତ୍ୱ ଅନୁସାରେ ଈଶ୍ୱରଙ୍କର ସମ୍ପୂର୍ଣ୍ଣ ଓ ଏକାକାର ରୂପକୁ ସେ ସ୍ୱୀକାର ପୂର୍ବକ ଦର୍ଶାଇବାରେ ହେଳା କରିଛନ୍ତି । ଜଗନ୍ନାଥ ଧର୍ମ ସମ୍ପୂର୍ଣ୍ଣ ସମସ୍ତ ବିଷୟ

ଲୋକମାନସିକ ଶାନ୍ତି ନିମନ୍ତେ ମନୁଷ୍ୟକୃତ ନିତିନିୟମ ମାତ୍ର । ମାତ୍ର ନିରାକାର ସାର୍ବଭୌମ ଈଶ୍ୱରଙ୍କ କ୍ଷେତ୍ରରେ ଏହାର ପ୍ରୟୋଜନୀୟତା ନାହିଁ । କବିଙ୍କ ଭାଷାରେ :

"ଯେ ସତ୍ୟ ଜଗତର ନାଥ । ତାଙ୍କୁ ଏକ ଗଢିବ ଏମନ୍ତ ।
ଏକ ତାଙ୍କୁ ହାଣିବ ବାର୍ଷିରେ । ଏକ ଅବା ଲେପିବ ରଙ୍ଗରେ ।
ଏକ ତାଙ୍କୁ ଦେବ ଜୀବଦାନ । କେ ତାଙ୍କୁ କରିବ ନିର୍ମାଣ ।
ଜଗନ୍ନାଥ ଶବ୍ଦର ଅର୍ଥ । ସକଳ ଜଗତର କଥା ।
ସମସ୍ତ ଜୀବଙ୍କୁ ଗଢନ୍ତି । ତାହାଙ୍କୁ କେ ଗଢି ପାରନ୍ତି ।
ତାହାଙ୍କୁ ଗଢିବାର ପାଇଁ । ମହୀମଣ୍ଡଳେ ଏକ ଅଟଇ ।
ସେହି ସ୍ୱୟମ୍ଭୁ ନିରାକାର । ନିଜେ ସୃଜିଲେ ଏ ସଂସାର ।
ଅନାଦି ସ୍ୱୟଂଜୀବୀ ସେହି । ତାହାଙ୍କୁ କେ ଗଢି ପାରଇ ।
ଅତୁଲ୍ୟ ଉପମା ରହିତ । ସେ କି ହୋଇବେ ନିମ୍ବକାଠ ।
ଯେ ଜଗନ୍ନାଥ ଆତ୍ମାରୂପ । ସେ କି ଧରିବେ କାଷ୍ଠରୂପ ।
ଯେ ସୃଜିଲେ ଏହି ଜଗତ । ହେବେକି ଲୋକ ହସ୍ତକୃତ ।
ଯେ ନିଜେ ଦିଅନ୍ତି ଜୀବନ । କେ ତାଙ୍କୁ ଦେବ ଜୀବଦାନ ।

— *(ଜଗନ୍ନାଥ ପରୀକ୍ଷା - ଜଗନ୍ନାଥଙ୍କ ଉତ୍ପତ୍ତି, ପୃ-୩)*

ଏକେଶ୍ୱରବାଦ ତଥା ପିତୁଳା ପୂଜାର ବିରୋଧ ଖ୍ରୀଷ୍ଟଧର୍ମରେ ରହିଥିଲେ ମଧ୍ୟ, ଏହା ମଧ୍ୟ ବୈଦିକ ଶାସ୍ତ୍ର ସମ୍ମତ । ତେଣୁ ସମକାଳୀନ ନୂତନ ଖ୍ରୀଷ୍ଟଧର୍ମାନ୍ତରିତ ବ୍ୟକ୍ତିଗଣ ସମ୍ଭବତଃ ଏହି ଦୁଇ ଧର୍ମମତର ସାମ୍ୟ ଲକ୍ଷ୍ୟକରି ମୌଳିକତାଠାରୁ ଦୂରେଇ ଆସିଛନ୍ତି ।

"ଜଗନ୍ନାଥ ପରୀକ୍ଷା" ଏକ ମିଶନାରୀ ଟ୍ରାକ୍ଟ୍ । ଏହାର ବହୁଳ ପ୍ରସାର ଥିଲା ବୋଲି ମାତ୍ର ଅଣଷଠି ବର୍ଷ ମଧ୍ୟରେ (୧୮୬୫ - ୧୯୨୪) ଏହାର ୨୩ ଗୋଟି ସଂସ୍କରଣରୁ ପ୍ରମାଣିତ ହୁଏ ।

### ଘ. ମିଶନାରୀ ପତ୍ରିକା ପ୍ରବୋଧ ଚନ୍ଦ୍ରିକା: ଏକ ଦୃଷ୍ଟିପାତ

୧୮୫୬ ମସିହାରେ ପ୍ରବୋଧ ଚନ୍ଦ୍ରିକା ଓଡ଼ିଶା ମିଶନ ପ୍ରେସ୍‌ରୁ ପ୍ରକାଶିତ ହୁଏ । ୧୮୫୬ ମସିହା ପରେ ୧୯୮୪ ମସିହାରେ ଅର୍ଥାତ୍ ପ୍ରାୟ ୧୨୮ ବର୍ଷ ପରେ ପ୍ରଫେସର୍ ଡକ୍ଟର ବଂଶୀଧର ମହାନ୍ତି ଦ୍ୱାରା ଏହା ସମ୍ପାଦିତ ହୋଇ ଉତ୍କଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ପ୍ରକାଶିତ ହୁଏ । ଏଥିରେ ପ୍ରାୟ ୧୯ ପୃଷ୍ଠାର ମୁଖବନ୍ଧ ସଂଯୋଜିତ ହୋଇଅଛି । ମୁଖବନ୍ଧଟି ପାଠ କରିସାରିଲା ପରେ ସ୍ୱତଃ ଧାରଣା ଆସିଯାଏ ଯେ, ପ୍ରଫେସର ମହାନ୍ତିଙ୍କର ମିଶନାରୀ ସାହିତ୍ୟ ସମ୍ପର୍କରେ କୌଣସି ଧାରଣା ନାହିଁ । ବାରମ୍ବାର ବିଚିତ୍ର ଭ୍ରମ ହେତୁ ମୁଖବନ୍ଧଟି

ତାହାର ଅସ୍ତିତ୍ୱ ହରାଇ ବସିଛି । ଏହି ସ୍ଥାନରେ ଡକ୍ଟର ମହାନ୍ତିଙ୍କର ଭ୍ରମଗୁଡ଼ିକ ଦେଖାଇ ଦିଆଯାଉଛି ।

କ. ଓଡ଼ିଶାରେ ଖ୍ରୀଷ୍ଟିୟାନ ଧର୍ମର ପ୍ରଚାର ଓ ପ୍ରସାର ସହିତ ପାଶ୍ଚାତ୍ୟ ଶିକ୍ଷା କିପରି ପ୍ରବେଶ କରିଛି, ତା'ର ଏକ ଇତିହାସ ରହିଛି । ଊନବିଂଶ ଶତାବ୍ଦୀ ଭାରତର ବିଶିଷ୍ଟ ଖ୍ରୀଷ୍ଟିୟାନ ପାଦ୍ରୀ ପଣ୍ଡିତ ଉଇଲିୟମ୍ କାରେ (Carey) ଓ ଥମାସ୍ ବଙ୍ଗଳାକୁ ଯିବା ପଥରେ କିଛି ସମୟ ବାଲେଶ୍ୱରରେ ଅବସ୍ଥାନ କରିଥିଲେ ଓ ସେକାଳରେ ଖ୍ରୀଷ୍ଟିୟାନ ଧର୍ମପ୍ରଚାରକଗଣ ପ୍ରାୟତଃ ସେମାନଙ୍କ ଦେଶରୁ ଜାହାଜରେ ଆସି ପ୍ରଥମେ ଓଡ଼ିଶା ଉପକୂଳରେ ଅବତରଣ କରିଥିଲେ । ରେଭେରେଣ୍ଡ କ୍ୟାମ୍ପବୋନ୍ (Campbone)ଓ ରେଭେରେଣ୍ଡ୍ ଲାସେ (Lecey) ଓଡ଼ିଶାରେ ପ୍ରଥମ କରି ମିଶନ୍ କାର୍ଯ୍ୟ ଆରମ୍ଭ କରିଥିଲେ । ସେମାନେ ମଧ୍ୟ ଓଡ଼ିଶାରେ ପାଶ୍ଚାତ୍ୟ ଶିକ୍ଷାର ପ୍ରବର୍ତ୍ତନ କଲେ । *(ଦ୍ରଷ୍ଟବ୍ୟ: ପ୍ରବୋଧ ଚନ୍ଦ୍ରିକା - ମୁଖବନ୍ଧ)*

ପ୍ରଥମତଃ, 'ଉଇଲିୟମ କାରେ' ନାମଟି ସମ୍ଭବତଃ ଓଡ଼ିଆ ସାହିତ୍ୟରେ ପ୍ରଥମେ ଶୁଣାଗଲା । ତାହା 'କାରେ' ନୁହେଁ ମାତ୍ର କେରୀ ।

ଦ୍ୱିତୀୟତଃ, 'ରେଭେରେଣ୍ଡ କ୍ୟାମ୍ପବୋନ୍' (Campbone) ନାମଟି ମଧ୍ୟ ସମ୍ଭବତଃ ଓଡ଼ିଆ ସାହିତ୍ୟରେ ପ୍ରଥମେ ଶୁଣାଗଲା । ତାହା 'କାମ୍ପବୋନ୍' ନୁହେଁ ମାତ୍ର ବ୍ୟାମ୍ପଟନ୍ (Bampton) ।

ତୃତୀୟତଃ, 'ରେଭେରେଣ୍ଡ୍ ଲାସେ' (Lacey) ନାମଟି ମଧ୍ୟ ଓଡ଼ିଆ ସାହିତ୍ୟରେ ପ୍ରଥମେ ଶୁଣାଗଲା । ତାହା 'ଲାସେ' ନୁହେଁ ମାତ୍ର 'ଲେସୀ' (Lacey) । ପୁଣି 'ଲେସୀ' ଓଡ଼ିଶାରେ କେତେବେଳେ ପ୍ରଥମ କରି ମିଶନ୍ କାର୍ଯ୍ୟ ଆରମ୍ଭ କରିଥିଲେ, ତାହା ବୁଝି ହେଲା ନାହିଁ । 'ବ୍ୟାମ୍ପଟନ୍' (Bampton)ଙ୍କ ସହିତ 'ରେଭେରେଣ୍ଡ୍ ପେଗସ୍' (Peggs) ଓଡ଼ିଶା ଆସି ଓଡ଼ିଶାରେ ପ୍ରଥମ କରି ମିଶନ୍ କାର୍ଯ୍ୟ ଆରମ୍ଭ କରିଥିଲେ ।

ଡକ୍ଟର ମହାନ୍ତି କେଉଁ ଉତ୍ସରୁ ଏହି ବିଚିତ୍ର ଉପାଦାନ ସବୁ ଆଣି ସଂଗ୍ରହ କରିଛନ୍ତି ତାହା କେବଳ ସେ ହିଁ କହିପାରିବେ ।

ଏସବୁ ସତ୍ତ୍ୱେ ଏ ବିଷୟ ମଧ୍ୟ ସ୍ମରଣ ଯୋଗ୍ୟ ଯେ, ଅଧ୍ୟାପକ ଡକ୍ଟର ମହାନ୍ତିଙ୍କର ଉଦ୍‌ଯୋଗ ଯୋଗୁଁ ଆଜି ବିଲୁପ୍ତପ୍ରାୟ ମିଶନାରୀ ପତ୍ରିକା ପ୍ରବୋଧ ଚନ୍ଦ୍ରିକା ପୁନଃ ପ୍ରକାଶିତ ହୋଇଛି ଏବଂ ପାଠକ/ଗବେଷକ ମାନେ ଏହାକୁ ଦେଖିବାର ସୁଯୋଗ ପାଇପାରୁଛନ୍ତି । ଏହା କିଛି କମ୍ ବଡ଼ କଥା ନୁହେଁ, ଏଥିପାଇଁ ଡକ୍ଟର ମହାନ୍ତି ଏ ଜାତି ନିକଟରେ ନମସ୍ୟ ହୋଇ ରହିବେ । ଏହି ସଂସ୍କରଣରେ ଡକ୍ଟର ମହାନ୍ତିଙ୍କ ଦ୍ୱାରା ସଂଗୃହୀତ ପ୍ରବୋଧ ଚନ୍ଦ୍ରିକାର ପାଠ୍ୟକୁହିଁ ଗ୍ରହଣ କରାଯାଇଛି ।

## ଡ. ନିସ୍ତାର ରତ୍ନାକର

ବିଭିନ୍ନ ମୁଦ୍ରିତ ଓଡ଼ିଆ ଟ୍ରାକ୍ଟ୍ ମଧ୍ୟରେ 'ନିସ୍ତାର ରତ୍ନାକର' ବା Mine of Salvation or Jewel Mine of Salvation ଏକ ବହୁ ଚର୍ଚ୍ଚିତ ପ୍ରଚାର ପତ୍ର । ଏହା ମୂଳତଃ ତାମିଲ ଭାଷାରେ ଲିଖିତ ହୋଇଥିଲା । ତାମିଲ ଭାଷାରେ ଏହାର ଲେଖକ ଥିଲେ ହେନେରୀ ମାଟିନ୍ ସ୍କଡର (Henry Martin Scudder) ଏହି ସମ୍ପର୍କରେ ଏକ ରିପୋର୍ଟରେ ଲେଖାଅଛି:

"Mr. H. M. Scudder has prepared a work of 124 pages in Tamil, which he calls the 'Jewel Mine of Salvation,' on which, he says, "I have labored intensely for months."

*(Annual report - American Board of Commissioners for Foreign Missions: Volumes 43-45 - Page 101)*

ପରବର୍ତ୍ତୀ ସମୟରେ ଏହି ପୁସ୍ତକ ଅନ୍ୟାନ୍ୟ ଭାଷାରେ ଅନୁବାଦିତ ହୋଇଥିଲା । ମୁନ୍‌ସୀ ରାମ ରାମ ବସୁଙ୍କ ଦ୍ୱାରା ଏହା ପ୍ରଥମେ ବଙ୍ଗଳା ଭାଷାରେ ଅନୁବାଦିତ ହୋଇ ପ୍ରକାଶ ପାଇଥିଲା । ଏହି ସମ୍ପର୍କରେ ମିଶନାରୀ ରିପୋର୍ଟରେ ଲେଖାଅଛି:

"As already mentioned, the first Bengali tract was written in this form by Ram Basu, and entitled " The Gospel Messenger," and it may be interesting to our readers if we present to them a few extracts therefrom. The translation was made by Dr. Marshman; but, owing to the great differences of idiom, he found it very difficult to preserve the spirit of the poem. Our first extract relates to the value of the Scriptures.

In other books is no salvation found,<br>
Customs and ceremonies there abound.<br>
Hindus and Mussulmans their shasters boast;<br>
These we have well examined, but, at most,<br>
They're children's stories - falsehood in disguise;<br>
The news of mercy "nowhere in them lies.<br>
Such shasters wo have formerly possessed,<br>
But the Great Shaster found,]we threw away the rest.<br>
This great and holy Shaster's The Good Word;<br>
In this alone is full redemption stored.

Then follows a declaration of the divine anger against all sin and its adherents, with a proclamation of the divine mercy in Jesus Christ.

The helpless sinner's friend was our incarnate
God! He, standing by his glorious Father's side,
Himself distinct in glory, thus replied :-
"I will be born on earth for sinners' sake,
"And all sin's torment on myself will take.
"The souls who come and put their trust in me,
"Wilt thou from condemnation set them free
"The Father says, "I will; my promise this,
"Thy followers I'll forgive, and bring to heavenly bliss.
"The Lord incarnate now appeared on earth;
Angels and shepherds hailed the Saviour's birth;
Incarnate Jesus Christ, the name He bore,
And numerous miracles attest his power;
To accomplish all the holy prophecies,
He, by the hand of his own nation dies.
'Midst various torments he resigns his breath,
But the third day he triumphs over death.
Rising, he forty days on earth remained;
And truths important he to men explained.
He in his Father's presence now abides,
And those who trust in him to glory guides;
Hoping in Him, on earth whoever dies
Are then received to bliss above the skies.

The widespread influence of the precious book in which this story of love is given is then referred to. It is read in many tongues, and spreads its saving light in many lands. The poem concludes :-

Now, O Bengalees, in your tongue 'tis given,
When printed off you'll see this gift of heaven;
If, then, you feel indeed a wish to hear,
Come, and with earnest mind, we'll it to you declare.

*(The Baptist Magazine - 1854, p. 119-20)*

ସେହପରି ଜନ୍ ମର୍‌ଡକ୍ ଲେଖିଛନ୍ତି: "Three months later a Tract was printed under the title of " The Gospel Messenger," which was written "to usher in the Bible." This little book contained a hundred lines in Bengali verse. The writer, Ram Ram Basu, had been convinced of the truth of Christianity through the instruction of Mr. Thomas. "The Gospel Messenger," the first thoroughly native Tract

printed in Bengali, was the basis of the highly useful Tract, "The Mine of Salvation."

*(Catalogue of the Christian vernacular literature of India -1870, p. 5)*

ପୁସ୍ତକଟିର ବଙ୍ଗ ଅନୁବାଦ ସମ୍ପର୍କରେ ଆଚାର୍ଯ୍ୟ ସି.ବି.ଲୁଇସ୍ ଲେଖିଛନ୍ତି: "We notice a tract then printed under the title of "The Gospel Messenger," which was written to usher in the Bible. This little book contained "a hundred lines, in Bengali verse." The writer was a Kayasth, named Ram Ram Basu, who had been deeply convinced of the truth of Christianity, through the instructions of Mr. Thomas, whose Munshi he was, as early as 1788 -"

*(General Baptist Repository and Missionary Observer – p. 329, 1854)*

୧୮୦୨ ମସିହାରେ ଶ୍ରୀରାମପୁରର ଅନ୍ୟତମ ମିଶନାରୀ ଆଚାର୍ଯ୍ୟ ଯୋଶୁଆ ମାର୍ଶମାନ "Gospel Messanger" ନାମରେ ଏହାକୁ ବଙ୍ଗଳା ଭାଷାରେ ଅନୁବାଦ କରିଥିଲେ, ଏହା ଉକ୍ତ ବର୍ଷ "Biblical Magazine" ରେ ପ୍ରକାଶିତ ହୋଇଥିଲା । ଏହାର ମୂଳ ବଙ୍ଗଳା ଓ ଓଡ଼ିଆ ଅନୁବାଦ ଦେଖିବାର ସୁଯୋଗ ମୋହର ହୋଇନାହିଁ ତେଣୁ ମାର୍ଶମାନଙ୍କ ଦ୍ୱାରା ଇଂରାଜୀ ଓ ଓଡ଼ିଆ ରୂପାନ୍ତରକୁ ପାଠକମାନଙ୍କ ଅବଗତି ନିମନ୍ତେ ଏଠାରେ ପ୍ରକାଶ କରାଯାଉଛି :

"HEAR O ye people! with attentive mind -
From hell tremendous, how deliv'rance find?
On Takas,* Cowries, constantly employ'd,
our minds are of this wholesome care devoid.
We all are born to die; observe it well -
Bat death exalts to heaven, or sinks to hell.
Sin unforgiv'n, to heavTi you'll never go,
But headlong plunge into the gulph below!
Hell, what is that? What dreadful pains are there?
Ah, friend, you know not- hence you do not fear:
This dreadful gulph is fill'd with quenchless fire;
Nor will its flaming horrors e'er expire.
Once plunging here, you'll ne'er redemption see:
Eternity's vast bound will its beginning be.
O Brother! fear; nor tempt the awful brink;
Beware, beware, in quenchless flames you sink!

Oh seek deliv'rance - seek with earnest cry -
Without deliv'rance every soul must die.
In other books is no salvation found:
Customs and ceremonies there abound.
Hindus and Mussulmans their shasters boast:
These we have well examin'd - but at most
They're children's stories; falsehood in disguise;
The news of mercy no where in them lies.
Such shasters we have formerly possest,
But the Great Shaster found, we threw away the rest.
This Great and holy Shaster's THE GOOD WORD:
In this alone is full redemption stor'd.
Hear, hear, ye people! hear with greatest care:
You who desire it, come - we'll it declare.
Don't call it m'leech's, and so despise
The m'leech's shaster! no; - in this salvation lies.
We'll now a little of its contents tell,
Hear with your mind, would you escape from hell:-
WThen in creation, God his power had shown,
He unto men his great command made known.
To them he hell describ'd, and heav'nly bliss;
And mark'd the bounds of sin and holiness.
"Let all attend - my never-changing will -
Whate'er I speak I certainly fulfill:
On him who walks in holiness below,
Unmeasurable bliss will I bestow;
But quenchless fire shall be the certain doom
Of those who once to break my law presume."
Thus, formerly, the Lord his will made known -
Yet men in sin did plunge, till all were impious grown,
Jehovah knew that all were doom'd to die -
"For this," he said, " I've found a remedy."
In mercy God disclos'd the wondrous plan,
A second way to bless the ruin'd creature man:.
"If one on earth incarnate will become,
And sin's desert bear in the sinner's room;
Those sinners who on him indeed believe,
To them I surely will salvation give.
Who will be born; who take, who bear the mighty load?"
The helpless sinner's friend was our incarnate God!
He, standing by his glorious Father's side,

Himself distinct in glory, thus reply'd:
"I will be born on earth for sinner's sake,
And all sin's torments on myself will take:
The souls who come and put their trust in me,
Wilt thou from condemnation set them free?"
The Father says, "I will; my promise this,
Thy follow'rs I'll forgive; and bring to heav'nly bliss."
The Lord incarnate now appear'd on earth;
Angels and shepherds hail'd the Saviour's birth:
Incarnate, Jesus Christ, the name he bore,
And num'rous miracles attest his power:
To accomplish all the holy prophecies,
He, by the hands of his own nation, dies.
Midst various torments he resigns his breath;
But the third day he triumphs over death.
Rising, he forty days on earth remain'd:
And truths important, he to men explain'd.
He in his Father's presence now abides,
And those who trust in him to glory guides. -
Hoping in him, on earth whoever dies,
Are then receiv'd to bliss above the skies.
Hear, men, this news; with strict attention hear!
The blessed book, where this doth all appear,
At first in Hebrew and in Greek revealed;
From these obtaining, we have it unseal'd:
Nor we alone, a multitude beside,
ave thus the holy shaster's merits try'd:
French, Germans, Hollanders, and Portugese,
Danes and Armenians; nay, and more than these—
In Asia, Afric, and America;
Kingdoms and numerous isles its glory saw.
To all these countries hath this shaster gone;
And e'en to Malabar its light has shone.
Whoe'er by the great shaster have been blest,
Embracing this, have thrown away the rest.
Now, O Bengalees, in your tongue 'tis given;
When printed off, you'll see this gift of heaven.
If then you feel indeed a wish to hear,
Come, and with earnest mind, we'll it to you declare.

(*General Baptist Repository and Missionary Observer - p. 330 - 31, 1854*)

ବଙ୍ଗଳା "Gospel Messanger" ବା 'ସୁସମାଚାର ବାହକ' ବାଇବଲର ଏକ ପ୍ରବେଶିକା ଭାବରେ ରଚିତ ହୋଇଥିଲା । ଏହା ଏକ ଶହ ଧାଡ଼ି ବିଶିଷ୍ଟ ରଚନା । ଏହାର ରଚୟିତା ରାମ ରାମ ବସୁ ଜାତିରେ କାୟସ୍ଥ ଥିଲେ । ସେ ୧୭୮୮ ମସିହା ବେଳକ ମିଷ୍ଟର ଥୋମାସ୍‌ଙ୍କର ମୁନ୍‌ସି ଥିଲେ । ରାମ ରାମ ବସୁ ଖ୍ରୀଷ୍ଟଧର୍ମ ସଂସ୍ପର୍ଶରେ ଆସି ପ୍ରକୃତ ସତ୍ୟ କଣ ତାହା ଜାଣି ପାରିଥିଲେ । ପୂର୍ବପୁରୁଷମାନଙ୍କର କୁସଂସ୍କାର ସବୁ ତ୍ୟାଗ କରିଥିଲେ ମଧ୍ୟ ଖ୍ରୀଷ୍ଟ ଧର୍ମ ଗ୍ରହଣ କରିନଥିଲେ । ଏହି ବିଷୟ ତତ୍‌କାଳୀନ ମିଶନାରୀମାନଙ୍କର ହତାଶର କାରଣ ହୋଇଥିଲା । ଏହି ପ୍ରଚାରପତ୍ରର ପରବର୍ତ୍ତୀ ନାମକରଣ "The Mine of Salvation" ବା "Jewel Mine of Salvation" ହୋଇଥିଲା । ଗବେଷକ/ସଂଗ୍ରାହକ ଜେ.ଏଫ୍. ବ୍ଲୁମ୍‌ହର୍ଟ ତାଙ୍କର "Catlogue of the Library of the India Office"ରେ 'ନିସ୍ତାର ରତ୍ନାକର" ସମ୍ପର୍କରେ କୁହନ୍ତି:

"ନିସ୍ତାର ରତ୍ନାକର ବା Jewel Mine of Salvation କବିତାକାରରେ ପ୍ରକାଶିତ ହୋଇଥିଲା । ଏହା ଏକ ପ୍ରଚାରପତ୍ର । ଷୋହଳ ପୃଷ୍ଠା ସମ୍ବଳିତ ଏହାର ଚବିଶତମ ସଂସ୍କରଣ କଟକରୁ ୧୮୬୮ ମସିହାରେ ପ୍ରକାଶିତ ହୋଇଥିଲା ।"

*(Catlogue of the Library of the India Office - vol ii, part iv, 1905, p. 331)*

ଏହାର ସଂଖ୍ୟାଧିକ ସଂସ୍କରଣରୁ ପ୍ରଚାରପତ୍ରଟିର ଲୋକପ୍ରିୟତା ଅନୁମାନ କରିହୁଏ ।



# ସଂସ୍କୃତ ଭାଷାରେ ପ୍ରକାଶିତ ମିଶନାରୀ ସାହିତ୍ୟ

ଅତି ଅଳ୍ପ ମିଶନାରୀ ସାହିତ୍ୟ ଏହି ଭାଷାରେ ମୁଦ୍ରିତ ଓ ପ୍ରକାଶିତ ହୋଇଥିଲା । ଶ୍ରୀରାମପୁର ମିଶନରୁ ଗୋଟିଏ ମାତ୍ର ସଂସ୍କୃତ ଟ୍ରାକ୍ଟ ବା ପ୍ରଚାର ପତ୍ର ପ୍ରକାଶ ପାଇଥିଲା । ଅନ୍ୟ ଏକ ଟ୍ରାକ୍ଟ ବା ପ୍ରଚାର ପତ୍ର କଲିକତା ଟ୍ରାକ୍ଟ ସୋସାଇଟୀ ଦ୍ୱାରା ପ୍ରକାଶ ପାଇଥିଲା । ସେହିପରି ସଂସ୍କୃତ ଇଂରାଜୀ ଓ ପ୍ରାନ୍ତୀୟ ଭାଷାରେ ବମ୍ବେ ଓ କଲିକତା ଟ୍ରାକ୍ଟ ସୋସାଇଟୀ ପକ୍ଷରୁ ପୁସ୍ତିକା ପ୍ରକାଶ ପାଇଥିଲା । ସଂସ୍କୃତ ଭାଷା ସମ୍ପର୍କରେ ଜନ୍ ମର୍ଡକ୍ ମତ ଦେଇ ଲେଖିଛନ୍ତି:

"Over a great part of India, until recently, this was1 the only language studied by Hindus who claimed to be considered as learned. The vernaculars were despised1. Brahman students, generally supported by endowments or contributions, studied the language for many years. When English" began to spread, the Brahmans, in many cases, gave up learning Sanskrit. A Pundit at Benares told the compiler that he had sent his son to an English school, as the study' of Sanskrit now brought neither1 honour nor profit. The Indian Universities, however, have lately given an impulse to the study of this language."

*(Catalogue of the Christian Vernacular Literature - p. 33)*

ଅନ୍ୟାନ୍ୟ ଭାଷା ଅପେକ୍ଷା ସଂସ୍କୃତ ଭାଷାରେ ଅପେକ୍ଷାକୃତ ଭାବରେ କମ୍ ଟ୍ରାକ୍ଟ ମିଶନାରୀ ସାହିତ୍ୟ ମୁଦ୍ରଣ କରାଯାଇଥିଲା । କାରଣ ଏହି ଭାଷା ତୁଳନାତ୍ମକ ଭାବରେ ଖୁବ୍ କମ୍ ଲୋକ ଜାଣନ୍ତି । ଯେଉଁ ପଣ୍ଡିତ ବା ବ୍ରାହ୍ମଣମାନେ ଏହି ଭାଷା ଅଧ୍ୟୟନ କରୁଥିଲେ, ସେମାନେ ଅତ୍ୟନ୍ତ ପରିମାଣରେ ସଙ୍କୀର୍ଣ୍ଣମନା ଏବଂ ଅନ୍ଧବିଶ୍ୱାସୀ ଥିଲେ ।

*(-Do - p. 33)*

ସଂସ୍କୃତ ଭାଷାରେ ଡକ୍ଟର କେରୀଙ୍କର ନୂତନ ନିୟମ ୧୮୦୯ ମସିହାରେ ପ୍ରକାଶିତ ହୋଇଥିଲା । ସେହିପରି ୧୮୧୮ ମସିହାରେ ପୁରାତନ ନିୟମ ସମ୍ପୂର୍ଣ୍ଣ ହେଲା । ପରବର୍ତ୍ତୀ ସମୟରେ ଡକ୍ଟର ଇଟ୍ସ୍ ଏହି ସଂଶୋଧିତ ସଂସ୍କରଣର କିଛି ଅଂଶ ପରିମାର୍ଜ୍ଜନ କରିଥିଲେ । ହଠାତ୍, ତାଙ୍କର ପରଲୋକ ହେବାରୁ ପରିମାର୍ଜ୍ଜନର ଏହି ଦାୟିତ୍ୱ ଆଚାର୍ଯ୍ୟ ଜେ. ୱେଙ୍ଗରଙ୍କ

ଉପରେ ନ୍ୟସ୍ତ ହୋଇଥିଲା । ସଂସ୍କୃତ ସାହିତ୍ୟର ସାରଣୀ ଯାହା ଜନ୍ ପ୍ରଦାନ କରିଛନ୍ତି, ତାହା ନିମ୍ନରେ ପ୍ରଦାନ କରାଯାଉଛି:-

a. Short Account of the Way of Salvation. Serampore.
b. The Inefficacy of the Ganges to wash away Sin. 12mo. 12 pp. The Calcntta Tract Society. 1840. 5,000.
c. Christa Sanghita. Life of Christ in verse. By Dr. Mill. 2nd ed. 8vo. 343 pp. Bishop's College Press. 1843. *(Part of this work was printed in Ceylon, with a Singhalese translation.)*
d. Sanskrit Verses with MaratM and English Translations. By Dr. M. Mitchell. Bombay Tract Society. 1856.
e. Do. with Bengali and English Translations. 16mo. 40 pp. The Calcutta Tract Society. 1868. 500.

**Worles by Dr. Jokn Muir**

a. An Examination of Religions. PartI. 12mo. 106 pp.
b. Do. Sanskrit and Hindi. 224 pp.
c. Do. with English Translation. 178 pp.
d. Do. - Part II. 12mo. 206 pp.
e. The Glory of Jesus Christ. 12mo. 84 pp.
f. Do. Sanskrit and Hindi. 8vo. 342 pp.
g. Life of the Apostle Paul. 12mo. 108 pp.
h. Do. Sanskrit and Bengali. 12mo. 217 pp.
i. Course of Divine Revelation. 12mo. 93 pp.
j. Do. . Sanskrit and Marathi. 12mo. 107 pp.Bombay T. S. 1852.

ସଂସ୍କୃତ ମିଶନାରୀ ସାହିତ୍ୟ ସମ୍ପର୍କରେ ଫୋର୍ଟ ଉଇଲିୟମସ୍ଥିତ ସୁପ୍ରିମ୍ କୋର୍ଟର ମୁଖ୍ୟ ପଣ୍ଡିତ ରାମ ଜୟ ତର୍କାଲଂକାରଙ୍କର ଅଭିମତ ଏହିପରି:

"ଧର୍ମପୁସ୍ତକର ଅନୁବାଦ ଯାହା ସଂସ୍କୃତ ଭାଷାରେ କରାଯାଇଛି, ତାହା ଯେଉଁମାନେ ବାସ୍ତବରେ ସଂସ୍କୃତ ଭାଷା ବୁଝି ପାରନ୍ତି ସେମାନଙ୍କ ନିମନ୍ତେ ସହଜସାଧ୍ୟ"

*(Tenth memoir respecting the translations of the Sacred Scriptures into the oriental languages , P.50)*



# ଓଡ଼ିଆ, ବଙ୍ଗଳା ଓ ଆସାମୀ ଭାଷାରେ ଈଶ୍ୱରଙ୍କ ପ୍ରାର୍ଥନା

**ଓଡ଼ିଆ:**

ହେ ଆମ୍ଭମାନଙ୍କର ସ୍ୱର୍ଗସ୍ଥ ପିତା, ତୁମ୍ଭର ନାମ ପବିତ୍ର ମାନ୍ୟ ହେଉ, ତୁମ୍ଭର ରାଜ୍ୟ ପ୍ରକାଶ ପାଉ, ଯେମନ୍ତ ସ୍ୱର୍ଗରେ ତେମନ୍ତ ପୃଥିବୀରେ ତୁମ୍ଭର ଇଷ୍ଟକ୍ରିୟା କରାଯାଉ, ଆଜି ଆମ୍ଭାମାନଙ୍କର ନିତ୍ୟ ଭକ୍ଷ ଆମ୍ଭମାନଙ୍କୁ ଦିଅ, ପୁଣି ଯେମନ୍ତ ଆମ୍ଭେମାନେ ଆମ୍ଭାନଙ୍କର ଋଣଧାରୀମାନଙ୍କୁ କ୍ଷମା କରି ସେଇମତେ ଆମ୍ଭମାନଙ୍କର ଋଣ କ୍ଷମା କର, ଆମ୍ଭମାନଙ୍କୁ ପରୀକ୍ଷାରେ ଘେନି ଯାଅନା, ପୁଣି ଆମ୍ଭମାନଙ୍କୁ ଅପରାଦରୁ(ଧ) ରକ୍ଷା କର କି ପୁଣ ସ୍ବଦ ସର୍ବ କ୍ଷମାରେ ରାଜ୍ୟ ଓ ଶକ୍ତି ଓ ଗୌରବ ତୁମ୍ଭର, ଆମେନ୍ ।

**ବଙ୍ଗଳା:**

ହେ ଆମାଦେର୍ ସ୍ୱର୍ଗସ୍ଥ ପିତା, ତୋମାର ନାମ ପବିତ୍ର ମାନ୍ୟ ହଉକ୍, ତୋମାର ରାଜ୍ୟେର ଆଗମନ ହଉକ, ଯେମନ୍ ସ୍ୱର୍ଗେ ତେମନ ପୃଥିବୀତେ ତୋମାର ଇଷ୍ଟକ୍ରିୟା କରାଯାଉକ, ଅଦ୍ୟ ଆମାଦେର୍ ନିତ୍ୟ ଭକ୍ଷ ଆମାର୍ ଦିଗ୍‌କେ ଦେଓ, ଏବଂ ଯେମନ୍ ଆମ୍ରା ଆପ୍‌ନାର୍‌ଦେର୍ ରିଣଧାରୀ ଦିଗ୍‌କେ ମାଫ୍ କରି ସେଇମତେ ଆମାଦେର୍ ରିଣ ମାଫ୍ କରା ଏବଂ ଆମାର୍ ଦିଗ୍‌କେ ପରୀକ୍ଷା ଲୟାଇଓ ନା କିନ୍ତୁ ଆମାର୍ ଦିଗ୍‌କେ ଅପଧାୟିତେ ପରିତ୍ରାଣ କର  କେନନା ସଦ ସର୍ବକ୍ଷମା ରାଜ୍ୟ ଓ ଶକ୍ତି ଓ ଗୌରବ ତୋମାର, ଆମେନ୍ ।

**ଅସାମୀ:**

ହେ ଆମାର୍ ସ୍ୱର୍ଗତ୍ ଥକା ପିତ୍ରି, ତୋମାର ନାମ ପବିତ୍ର ମାନ୍ୟ ହକ୍, ତୋମାର ରାଜ୍ୟ ପ୍ରକାଶ ହକ, ଯେତେ ସ୍ୱର୍ଗତ୍ ତେନେ କି ପୃଥିବୀତୋ ତୋମାର ବାଞ୍ଛିତ କରମ କର ହକ୍ । ଆଜି ଆମାର୍ ଖବର ବେହାନି ଆମକ ଦିୟ, ଆରୁ ଯେନେକି ଆମର ଧୁରୋଓ୍ୱାହୁନୁକ୍ ଆମି ସୁହୋ ତେନେକି ଆମାର ଧାର ଇରା, ଆମକ୍ ପରୀକ୍ଷାଲି ନି ନିବୋ, କିନ୍ତୁ ଆମାକ୍ ଅପଦର ପର ପରିତ୍ରାଣ କର, କିୟୁନୋ ସୁଦ ସର୍ବଦା ରାଜ୍ୟ ଆରୁ ଶକ୍ତି ଆରୁ ଗୌରବ ଏଇ ସକଲ ତୋମାର, ଆମେନ୍ ।



# ଓଡ଼ିଆ ମିଶନାରୀ ସାହିତ୍ୟ ସମ୍ପର୍କରେ କେତେକ ଭ୍ରମଧାରଣା

୧୯ଶ ଶତାବ୍ଦୀ ଓଡ଼ିଶାରେ ଖ୍ରୀଷ୍ଟିୟାନ୍ ମିଶନାରୀମାନଙ୍କର ସ୍ଥାନ କ'ଣ ଥିଲା । ସେ ବିଷୟରେ ଅନେକ ଗବେଷକ ଓ ଆଲୋଚକ ଆଲୋଚନା କରି ସାରିଛନ୍ତି । ତେବେ ସ୍ୱର୍ଗତ ପ୍ରଫୁଲ୍ଲ କୁମାର ପାତ୍ର, ଅଧ୍ୟାପକ ଡକ୍ଟର ନଟବର ସାମନ୍ତରାୟ, ପ୍ରଫେସର ଶ୍ରୀନିବାସ ମିଶ୍ର, ପ୍ରଫେସର ଡକ୍ଟର ଗଗନେନ୍ଦ୍ରନାଥ ଦାଶ, ଡକ୍ଟର ସୀତାରାମ ମହାପାତ୍ର ଓ ଡକ୍ଟର ମହେଶ୍ୱର ମହାନ୍ତି ଅଗ୍ରଣୀ । ଊନବିଂଶ ଶତାବ୍ଦୀର ମିଶନାରୀକୃତିକୁ ସହଜରେ ବୁଝିପାରିଥିଲେ ଏହି ଗବେଷକମାନେ ।

ମିଶନାରୀମାନଙ୍କର ସମକାଳୀନ (୧୯ଶ ଶତାବ୍ଦୀ) ରେକର୍ଡପତ୍ର ନ ଦେଖି ମାଧ୍ୟମିକ ଉପାଦାନ *(Secondary Source)* ରୁ ତଥ୍ୟ ସଂଗ୍ରହ ଅତ୍ୟନ୍ତ ବିପଦଜନକ । ମାଧ୍ୟମିକ ଉପାଦାନରୁ ସଂଗୃହୀତ ତଥ୍ୟ ମୌଳିକ ଗବେଷଣା / ସମାଲୋଚନାର ପରିଚୟ ଦିଏ ନାହିଁ, ଯେହେତୁ ଏହା ସହଜ ସାଧ୍ୟ । ଉପାଦାନଗତ ତଥ୍ୟ ସମୂହରେ କେତେଦୂର ଐତିହାସିକ ସତ୍ୟ ନିହିତ ତାହା ସଂଗ୍ରହପୂର୍ବରୁ ପରଖିନେବା ଉଚିତ, ଯେଉଁ ସ୍ଥାନରେ ଅନେକ ଶ୍ରମ ସତ୍ତ୍ୱେ ମୌଳିକ ଉପାଦାନର ଅଭାବ ଘଟେ, ସେଠାରେ ମାଧ୍ୟମିକ ଉପାଦାନକୁ ବ୍ୟବହାର କରାଯାଏ । ମାଧ୍ୟମିକ ଉପାଦାନ ଆଦୌ ବିପଦମୁକ୍ତ ନୁହେଁ ।

ମାଧ୍ୟମିକ ଉପାଦାନ ବିପଦଯୁକ୍ତ ଥିବାରୁ ଏବଂ ଯେଉଁଥିରେ ଏହା ବ୍ୟବହୃତ ହୋଇଛି, ସେଥିରୁ ଅନ୍ୟଜଣେ *(ମିଶନାରୀ କାର୍ଯ୍ୟାବଳୀ ସମ୍ପର୍କରେ ଜଣେ ଅଜ୍ଞ)* ତଥ୍ୟ ସଂଗ୍ରହ ପୂର୍ବକ ଯଦି ଆଲୋଚନା କରନ୍ତି, ତେବେ ତାହା କେତେ ବିଭ୍ରାଟ ସୃଷ୍ଟିକରେ, ତାହାର ଅନ୍ୟତମ ଜ୍ୱଳନ୍ତ ଉଦାହରଣ ପଠାଣି ପଟ୍ଟନାୟକଙ୍କ 'ଓଡ଼ିଆ ସାହିତ୍ୟର ଇତିହାସ'ର 'ଊନବିଂଶର ନବଜାଗରଣ ଓ ଭାବ ବିପ୍ଳବ ଅଂଶ' (ଷଷ୍ଠ ସଂସ୍କରଣ, ୧୯୯୧) । ଏହି ଅଂଶ ସ୍ୱତଃ ପ୍ରମାଣିତ କରେ ଯେ ପଟ୍ଟନାୟକଙ୍କର ମିଶନାରୀ ସାହିତ୍ୟ ବା ଇତିହାସ ସମ୍ପର୍କରେ କୌଣସି ଧାରଣା ନାହିଁ ବା କୌଣସି ମିଶନାରୀ ଇତିହାସ ପୁସ୍ତକ ମୌଳିକ ରୂପରେ ଦେଖିନାହାନ୍ତି । ଏଠାରେ ଅବଶ୍ୟ ସ୍ମରଣ ଯୋଗ୍ୟଯେ, ଶ୍ରୀଯୁକ୍ତ

ପଟ୍ଟନାୟକଙ୍କ ଓଡ଼ିଆ ସାହିତ୍ୟର ଇତିହାସର ପ୍ରକାଶନ ପୂର୍ବରୁ ଓଡ଼ିଶାରେ ମିଶନାରୀ ଇତିହାସ ଓ ସାହିତ୍ୟ ସମ୍ପର୍କରେ ସ୍ୱର୍ଗତ ପ୍ରଫୁଲ୍ଲ କୁମାର ପାତ୍ର 'ଓଡ଼ିଶାରେ ବ୍ୟାପଟିଷ୍ଟ ମିଶନାରୀର କାର୍ଯ୍ୟ ଏବଂ ଖ୍ରୀଷ୍ଟୀୟ ମଣ୍ଡଳୀ ସ୍ଥାପନର ଇତିହାସ (୧୮୨୨ - ୧୯୪୨)', ସ୍ୱର୍ଗତ ଡକ୍ଟର ନଟବର ସାମନ୍ତରାୟ 'ଓଡ଼ିଆ ସାହିତ୍ୟର ଇତିହାସ (୧୮୦୩-୧୯୨୦)', ଡକ୍ଟର·ଶ୍ରୀନିବାସ ମିଶ୍ର 'ଆଧୁନିକ ଓଡ଼ିଆ ଗଦ୍ୟ ସାହିତ୍ୟ', ଡକ୍ଟର ଗଗନେନ୍ଦ୍ରନାଥ ଦାଶ 'ଓଡ଼ିଆ ଭାଷାଚର୍ଚ୍ଚାର ପରଂପରା', ଡକ୍ଟର ସୀତାରାମ ମହାପାତ୍ର 'ଉନ୍ନବିଂଶ ଶତାବ୍ଦୀର ଓଡ଼ିଶାକୁ ଖ୍ରୀଷ୍ଟିୟାନ ମିଶନାରୀମାନଙ୍କର ଦାନ', ଡକ୍ଟର ମହେଶ୍ୱର ମହାନ୍ତି 'ଓଡ଼ିଆ ଶିଶୁସାହିତ୍ୟର ସାମାଜିକ ପୃଷ୍ଠଭୂମି : ଏକ ଅଧ୍ୟୟନ' ଓ ଡକ୍ଟର ସ୍ମରଣ କୁମାର ନାୟକ 'ଉନ୍ନବିଂଶ ଶତାବ୍ଦୀର ଓଡ଼ିଶାକୁ ମିଶନାରୀ ଡକ୍ଟର ଆମେଷ ସଟନଙ୍କ ଦାନ' ବିଭିନ୍ନ ଭାବରେ ଆଲୋଚନା କରିଛନ୍ତି ।)

ଏଠାରେ ଶ୍ରୀଯୁକ୍ତ ପଟ୍ଟନାୟକଙ୍କର କେତେକ ବିଭ୍ରାନ୍ତିକର ତଥ୍ୟସଂପର୍କରେ ଆଲୋଚନା କରାଯାଉଛି ।

ପ୍ରଥମତଃ : ୧୨.୦୨.୧୮୨୨ ଖ୍ରୀଷ୍ଟାବ୍ଦରେ ଇଂଲଣ୍ଡରୁ ଆଗତ ଖ୍ରୀଷ୍ଟିୟାନ ପାଦ୍ରୀ ରେଭରେଣ୍ଡ ମିଷ୍ଟର କାମ୍ପବୋନ ପ୍ରଥମେ ଓଡ଼ିଶା ଉପକୂଳରେ ଓହ୍ଲାଇଥିଲେ । ଏହି ଘଟଣାର ଦୁଇବର୍ଷ ପରେ ରେଭରେଣ୍ଡ ମିଷ୍ଟର ଲେସି ମଧ୍ୟ ଏ ଦେଶରେ ପଦାର୍ପଣ କଲେ । ଏପ୍ରକାର ବିଚିତ୍ର ତଥ୍ୟ ପଟ୍ଟନାୟକ କେଉଁ ସ୍ଥାନରୁ ପାଇଲେ, ତାହା ଅବଶ୍ୟ ଅନୁସନ୍ଧାନ ସାପେକ୍ଷ ।

ମିଶନାରୀ ରେକର୍ଡ ଅନୁସାରେ ୧୮୨୨ ମସିହା ଫେବୃୟାରୀ ମାସ ୧୨ ତାରଖ ମଙ୍ଗଳବାର ଦିନ ମିଶନାରୀ ରେଭରେଣ୍ଡ ଉଇଲିୟମ ବାମ୍ପଟନ ଓ ମିଶନାରୀ ରେଭରେଣ୍ଡ ଜେମସ ପେଗସ୍ ଓଡ଼ିଶା ମାଟିରେ ପାଦ ଦେଇଥିଲେ । (Peggs P-156)

ପଟ୍ଟନାୟକଙ୍କର ଅନ୍ୟ ଏକ ମତ ଦେଖାଯାଉ ଯେ ଦୁଇ ବର୍ଷ ପରେ ଅର୍ଥାତ ୧୮୨୪ ମସିହାରେ ରେଭରେଣ୍ଡ ମିଷ୍ଟର ଲେସୀ ମଧ୍ୟ ଏ ଦେଶରେ ପଦାର୍ପଣ କଲେ । କିନ୍ତୁ, ପେଗସଙ୍କର ବିବରଣୀ ଅନୁସାରେ ଲେସୀ (Charles lacey) ଡିସେମ୍ବର ୧୮୨୩ ମସିହାରେ (ରେଭ. ଚାର୍ଲସ ଲେସୀ ଡିସେମ୍ବର, ୧୮୨୩) ଓଡ଼ିଶା ଆସିଛନ୍ତି । ଅର୍ଥାତ, ବ୍ୟାମ୍ପଟନ୍ ଓ ପେଗସ୍‌ଙ୍କ ଓଡ଼ିଶା ଆଗମନର ଏକ ବର୍ଷ ପରେ ।

ଦ୍ୱିତୀୟତଃ : ପଟ୍ଟନାୟକଙ୍କର ମତରେ - ଏହି ପାଦ୍ରୀମାନେ ୧୮୩୭ ଖ୍ରୀଷ୍ଟାବ୍ଦରେ ପ୍ରଥମେ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା କରି ଓଡ଼ିଆ ଅକ୍ଷରରେ ମୁଦ୍ରଣ କାର୍ଯ୍ୟ ଆରମ୍ଭ କଲେ । (ପୃ – ୪୧୬)

ଓଡ଼ିଶା ମିଶନ ପ୍ରେସ୍ ୧୮୩୭ ମସିହାରେ ଚାର୍ଲସ ଲେସୀଙ୍କ ଦ୍ୱାରା ଓଡ଼ିଶାକୁ ଅଣାଯାଇ ୧୮୩୮ ମସିହାରେ ପ୍ରତିଷ୍ଠା କରାଯାଇଥିଲା । ୧୮୩୭ରେ ନୁହେଁ ।

*(Orissa and its Evangelization – Sutton, 1850 p-319)*

ତୃତୀୟତଃ : ରେଭରେଣ୍ଡ ମି. ଲେସୀଙ୍କର କଟକ ମିଶନ ପ୍ରେସ୍‌ରୁ 'ଜ୍ଞାନାରୁଣ' ନାମକ ଏକ ପତ୍ରିକା ପ୍ରକାଶ କଲେ । ୧୮୫୪ରେ ଲେସୀଙ୍କ ସଂପାଦନାରେ 'ପ୍ରବୋଧ ଚନ୍ଦ୍ରିକା' ନାମରେ ଆଉ ଏକ ପତ୍ରିକା ପ୍ରକାଶିତ ହୋଇଥିଲା । (ପୃ-୪୧୬)

'ଜ୍ଞାନାରୁଣ' ପତ୍ରିକା Rev. C. Laceyଙ୍କ ସମ୍ପାଦନାରେ ୧୮୪୯ ବେଳକୁ ପ୍ରକାଶ ପାଉଥିଲା ବୋଲି ଡକ୍ଟର ନଟବର ସାମନ୍ତରାୟ କହିଛନ୍ତି *(ପୃ - ୦୨, ଆଧୁନିକ ଓଡ଼ିଆ ସାହିତ୍ୟର ଭିତ୍ତିଭୂମି – ୧୯୮୨)*, ୧୯୫୪ ମସିହାର ଏକ ମିଶନାରୀ ପତ୍ରିକାରେ ଲେସୀଙ୍କର ମୃତ୍ୟୁ ପରେ ଡକ୍ଟର ଆମୋଷ ସଟନଙ୍କ ଲିଖିତ 'A Brief Memoir of Rev Charles Lacey' ପ୍ରବନ୍ଧ ପ୍ରକାଶ ପାଏ । ଲେସୀଙ୍କର ମୃତ୍ୟୁ ୧୮୫୩ ମସିହାରେ ହୋଇଥିଲା ବୋଲି ୧୮୫୭ ମସିହାରେ ପ୍ରକାଶିତ 'Life Scenes from Missionaries' ପୁସ୍ତକରେ Erasmus Darwin Moore ସ୍ପଷ୍ଟ ଉଲ୍ଲେଖ କରିଛନ୍ତି – 'Mr. Lacey was a missionary of the General Baptist Society (London), and at the time of his death, January, 1853, was stationed at Cuttack, India.'ତେବେ ୧୮୫୫ ମସିହା ବେଳକୁ ଲେସୀ କିପରି ସମ୍ପାଦନା କଲେ 'ପ୍ରବୋଧ ଚନ୍ଦ୍ରିକା', ତାହା ଏଠାରେ ବୁଝିହେଲା ନାହିଁ ।

ଏହିପରି ଏକ ଅସାର ଭିତ୍ତିହୀନ ମତ ଫଳରେ ପାଠକରଣ ବିଭ୍ରାନ୍ତ ହେବା ସ୍ୱାଭାବିକ ଯେ ଲେସୀ 'ଜ୍ଞାନାରୁଣ' ଓ 'ପ୍ରବୋଧ ଚନ୍ଦ୍ରିକା' ପତ୍ରିକା ସଂପାଦନା କରିଥିଲେ । ପ୍ରବୋଧ ଚନ୍ଦ୍ରିକା ପତ୍ରିକା Rev Charles Lacey ନୁହଁନ୍ତି ମାତ୍ର W.C. Laceyଙ୍କ ଦ୍ୱାରା ସମ୍ପାଦିତ ହୋଇ ପ୍ରକାଶିତ ହେଉଥିଲା । Rev. Charles Lacey ଏବଂ W.C. Lacey ସମାନ ବ୍ୟକ୍ତି ନୁହନ୍ତି । W.C. Lacey ହେଉଛନ୍ତି ସେହି ସମୟର ଜଣେ ପୋଲିସ୍ ଡି.ଏସ୍.ପି । ଆହୁରି ମଧ୍ୟ କହିବାକୁ ଗଲେ ୧୮୬୬ ମସିହାରେ ଓଡ଼ିଶାରେ ହୋଇଥିବା ନଅଙ୍କ ଦୁର୍ଭିକ୍ଷର ସମ୍ପର୍କରେ ଅନୁସନ୍ଧାନ କରିବା ପାଇଁ ଯେଉଁ କମିଶନ ଗଠନ କରାଯାଇଥିଲା ସେହି ସମୟରେ ଆଲୋଚ୍ୟ W.C. Laceyଙ୍କର ମଧ୍ୟ ସାକ୍ଷ୍ୟ ଗ୍ରହଣ କରାଯାଇଥିଲା । ସେଥିରେ ତାଙ୍କର ପରିଚୟ ଏହପରି ଥିଲା: Mr. W. C. Lacey, District Superintendent of Police, Cuttack.

*(House of Commons papers (Report of the Famine Commission): Volume 51 - Page- 22)*

ପଟ୍ଟନାୟକଙ୍କର ଏପ୍ରକାର ବିଭ୍ରାନ୍ତକରମତ ଯୋଗୁଁ ମିଶନାରୀମାନଙ୍କ କୃତି ଓ ଇତିହାସ ସମ୍ପର୍କୀତ ଗବେଷଣା କଣ୍ଟକତ ହୋଇଛି । ମିଶନାରୀ ବା ବିବରଣୀ ସବୁ ସହଜରେ ଉପଲବ୍ଧ ନୁହେଁ, ତେଣୁ ପାଠକ ଭ୍ରମସବୁ ଧରି ନପାରି ପୁସ୍ତକଟିକୁ ସହାୟକ ପୁସ୍ତକ ଭାବରେ ଗ୍ରହଣ କରି ପୁନରୁକ୍ତିଦୋଷରେ ଦୋଷଯୁକ୍ତ ହେବା ସ୍ୱାଭାବିକ ।

ତେବେ, ପଠାଣି ବାବୁଙ୍କ ଭ୍ରମର ଉତ୍ସକୁ ଖୋଜିବା ପାଇଁ ଆମକୁ ବେଶୀବାଟ ଯିବାକୁ ପଡିବନି । ୧୯୩୯ ମସିହାର Calcutta Review ରେ ପ୍ରକାଶିତ ପ୍ରିୟରଂଞ୍ଜନ ସେନ୍‌ଙ୍କର ପ୍ରବନ୍ଧରୁ ପଠାଣି ବାବୁ ଏହାକୁ ଆଣିଛନ୍ତି । ଏ ବିଷୟ ପଟ୍ଟନାୟକ ମଧ୍ୟ ସ୍ୱୀକାର କରିନେଇଛନ୍ତି । ଏଠାରେ ସେନ୍‌ଙ୍କର ମତକୁ ଦେଖାଇ ଦିଆଯାଉଛି –

"We have given above the name of the first Missionary as Rev. Mr. Campbone, who landed on the Orissa Coast 02 Feb12, 1822."

*(Calcutta Review - 1939, p. 204)*

ଏହାର ଅର୍ଥ, ଆଲୋଚକ ସେନ୍ ମଧ୍ୟ ମୌଳିକ ମିଶନାରୀ ବିବରଣୀ ଆଦୌ ଦେଖି ନାହାନ୍ତି କି ପଟ୍ଟନାୟକ ତାହାକୁ ଉଦ୍ଧୃତ କଲାବେଳେ ତାହାକୁ ପରୀକ୍ଷା କରିବାକୁ ଉଚିତ ମଣି ନାହାନ୍ତି । ଫଳରେ ଆଲୋଚକ ସେନ୍‌ଙ୍କର ପ୍ରକାଶିତ ମତକୁ ପାଠକମାନଙ୍କ ସମ୍ମୁଖରେ ଆହୁରି ପ୍ରଶସ୍ତ ଭାବରେ ଉପସ୍ଥାପନ କରିଛନ୍ତି । ଓଡ଼ିଶା ଓ ଓଡ଼ିଆ ସାହିତ୍ୟର ଆଧୁନିକତା ଉପରେ ଆଲୋଚନା କରିବାକୁ ଯାଇ ପ୍ରିୟରଞ୍ଜନଙ୍କର ପ୍ରବନ୍ଧ ନିକଟରେ ସେ ଉପସ୍ଥିତ ହୋଇଛନ୍ତି । ତଥ୍ୟ ସଂଗ୍ରହ ନିମନ୍ତେ ସେ କୌଣସି ମୂଳ ଉତ୍ସ ନିକଟରେ ପହୁଞ୍ଚି ତାହାକୁ ପୁଙ୍ଖାନୁପୁଙ୍ଖ ଅନୁଧ୍ୟାନ କରି ଉଦ୍ଧାର କରିବାକୁ ଉଚିତ ମଣି ନାହାନ୍ତି ।

ପଟ୍ଟନାୟକଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ' ୧୯୭୮ *(ମୁଖବନ୍ଧର ତାରିଖ ୨୩-୧୧-୭୮)* ମସିହାରେ ପ୍ରକାଶିତ ହୁଏ । ସେହିପରି ନଟବର ବାବୁଙ୍କର (ଡକ୍ଟର ନଟବର ସାମନ୍ତରାୟ) ଗବେଷଣା ନିବନ୍ଧ 'ଓଡ଼ିଆ ସାହିତ୍ୟର ଇତିହାସ – ୧୮୦୩ – ୧୯୨୦' ମେ ୧୯୦୪ ମସିହାରେ ପ୍ରକାଶ ପାଇସାରିଥିଲା । ତାହା ପାଠ କରିଥିଲେ ହୁଏତ ପଟ୍ଟନାୟକଙ୍କର ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ ଅଂଶଟି ସୁସଂଳତ, ମାର୍ଜିତ, ଭ୍ରମହୀନ ଓ ସତ୍ୟତଥ୍ୟାନୁସାରୀ ହୋଇପାରିଥାଆନ୍ତା ।

ପରିଶେଷରେ ଆଉ ଗୋଟିଏ ପ୍ରସଙ୍ଗ ଉତ୍ଥାପନ କରିବା ଏଠାରେ ଉଚିତ୍ ହେବ, ତାହା ହେଉଛି ଡଃ ଉଇଲିୟମ କେରୀଙ୍କର ନାମର ଉଚ୍ଚାରଣ ପଠାଣିବାବୁ ପୁସ୍ତକର ଗୋଟିଏ ସ୍ଥାନରେ ଲେଖିଛନ୍ତି ।

'୧୮୧୮ ଖ୍ରୀଷ୍ଟାବ୍ଦରେ କାରେ ସାହେବ ଶ୍ରୀରାମପୁରଠାରେ କଲେଜ୍ ପ୍ରତିଷ୍ଠା କରନ୍ତି । (ପୃ-୪୧୪) ସେହିପରି ଅନ୍ୟ ଏକ ସ୍ଥାନରେ ଲେଖିଛନ୍ତି ତାପରେ ପାଦ୍ରୀ କାରେ ସାହେବ ହିବ୍ରୁ ଭାଷାରୁ ଓଡ଼ିଆ ଭାଷାରେ ଭାଷାନ୍ତର କରି ପ୍ରକାଶ କଲେ । (ପୃ-୪୧୬) ପାଠକ ସାଧାରଣରେ ଝୁଣ୍ଟିପଡେ ଏହି କାରେ ସାହେବ ନାମ ପାଖରେ, ଭାବେ ଏହି ନାମରେ ବୋଧହୁଏ ଅନ୍ୟ ଜଣେ କୌଣସି ସାହେବ ଥିଲେ । କିନ୍ତୁ ଏହି କାରେ ସାହେବ ଅନ୍ୟ କେହି ନୁହନ୍ତି, ସେ ହେଉଛନ୍ତି ମିଶନାରୀ ଡକ୍ଟର କେରୀ । ପୂର୍ବରୁ ଗୋଟିଏ ସ୍ଥାନରେ କେରୀ ନାମଟି ପଠାଣିବାବୁ ବ୍ୟବହାର କରିଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ଏହିନାମକୁ କାରେ ଭାବରେ ଉଲ୍ଲେଖ କରିଛନ୍ତି । ଅର୍ଥାତ, ଆଲୋଚକ ପଟ୍ଟନାୟକ କେରୀ ଓ କାରେ ସାହେବଙ୍କୁ ଠିକ୍‌ଭାବରେ ଚିହ୍ନିପାରିନାହାନ୍ତି । ଏ ପ୍ରକାର ମଧ୍ୟ କୁହାଯାଇପାରେ ଯେ ମିଶନାରୀ ଇତିହାସ ସମ୍ପର୍କରେ ତାଙ୍କର କୌଣସି ଧାରଣା ନାହିଁ । ଫଳରେ ଜଣେ ବ୍ୟକ୍ତିଙ୍କୁ ଦୁଇଟି ଭିନ୍ନ ବ୍ୟକ୍ତି ଭାବରେ ଗ୍ରହଣ କରିନେଇଛନ୍ତି । ଫଳରେ କେରୀଙ୍କର ନାମକରଣରେ କାରେ ନାମକରଣର ସନ୍ଦେହ ଘେରରେ ସେ ଘୁରିବୁଲିଛନ୍ତି । ସେ ଭାବନେଇଛନ୍ତି କେରୀ ଓ କାରେ ଦୁଇଜଣ ବ୍ୟକ୍ତି । ଏଠାରେ ପାଠକମାନଙ୍କୁ ମନେ ପକାଇ ଦେବାକୁ ଇଚ୍ଛା ହୁଏ ଯେ ସ୍ୱର୍ଗତଃ ଶ୍ରୀଧର ମହାପାତ୍ର ମଧ୍ୟ ତାଙ୍କର ଓଡ଼ିଆ ପ୍ରକାଶନ ଓ ପ୍ରସାରଣର ଇତିହାସ ପୁସ୍ତକରେ ଏହି କାରେ ନାମ ବ୍ୟବହାର କରିଛନ୍ତି ।

*(ଓଡ଼ିଆ ପ୍ରକାଶନ ଓ ପ୍ରସାରଣର ଇତିହାସ, ପୃ. ୮୨, ୧୯୮୬)*

ଡକ୍ଟର ବଂଶୀଧର ମହାନ୍ତି ତାଙ୍କ ସମ୍ପାଦିତ ପ୍ରବୋଧ ଚନ୍ଦ୍ରିକାର ମୁଖବନ୍ଧରେ ଏହି କାରେ ସାହେବ ନାମର ବ୍ୟବହାର କରିଛନ୍ତି । *(ଦ୍ରଷ୍ଟବ୍ୟ: ପ୍ରବୋଧ ଚନ୍ଦ୍ରିକା – ମୁଖବନ୍ଧ- ୧୯୮୪)* ସେହିପରି ଶ୍ରୀଯୁକ୍ତ ମହାନ୍ତି ଜେମ୍‌ସ ପେଗସଙ୍କ ନାମକୁ ଜନ୍ ପେଗସ ବୋଲି ଉଲ୍ଲେଖ କରିଛନ୍ତି ।



# ପରିଶିଷ୍ଟ - ଖ

# THE SERAMPORE PRESS AND THE ORISSA MISSION (No. 3.)

*Dr. John Bucklay, D.D.*

The Orissa Scriptures and tracts, prepared and printed at Serampore, produced, by the blessing of the Most High, very important and gratifying results; and it is the design of this paper, in justice to honoured brethren who preceded us in efforts for the moral cultivation of this heathen wilderness, to state, so far as can be ascertained, the results of their important labours.

When our brethren first entered Orissa in 1822, they found the following printed books and tracts in the language *(See Report for 1827.)* : 1st, - The Oriya Bible by Dr. Carey, in five vols, 8vo. 2nd,-A Vocabulary, Oriya and English, by a native. Of this I know nothing, but it clearly had no relation to christianity. 3rd,-A Poem of 110 pages, on the Christian Religion, by a Bengali christian. This was the tract entitled Chreestaza beburana Amroot, or, the Immortal History of Christ. 4th,-A Tract by Mr. Ward, on the stopping of Juggernaut's car at Serampore. Written to prevent a human sacrifice for the car to proceed. (This last statement appears doubtful.) 5th,-Another tract, upon the folly of the worship of Juggernaut. 6th,-Scripture Extracts, (one leaf.) A copy or two of another tract has been found in Orissa. Mr. Peggs, who furnished this list, added, "Behold, dear brethren, the whole of a Christian Oriya Library on the arrival of your missionaries in Orissa." But it is obvious to remark, that while it was not improper to express regret at the scantiness of the christian publications they found on their arrival, it would have been highly becoming to record their thankfulness to God that they found in the

language of the country, the most precious of all treasures, the Word of God - which liveth and abideth for ever. How few missionaries on entering a new and important field of labour have been equally favoured! Let the reader refer to the history of the missions in Bengal, Burmah, the South Seas, and other countries, and he will be satisfied of the propriety of this remark. Thomas, after labouring for some time with Carey in Bengal, said with characteristic ardour - "I would give a million pounds sterling, if I had it, to see a Bengalee Bible. O! what an inestimable blessing will it be to these millions. The angels of heaven will look down upon it to fill their mouths with new praises and adorations. Methihks all heaven and hell will be moved at a Bible entering such a country as this." *(See Periodical Accounts, Vol. 1., pp. 392.)* Many devoted servants of the Lord have had to labour and toil for many years, before they have been able to give the people among whom they have laboured, the most important part of the Word of God. The lot of our brethren was a more favoured one. Much preparatory work, in this department, had been done; and soon as they acquired a little of the language they could go forth armed with the panoply of divine truth to face the mighty foe. It will be seen that the first success which gladdened the hearts of the labourers in Orissa, and which enkindled a transport of joy among the churches at home, was connected with the Christian Oriya Library which has just been mentioned.

It has already been stated that Carey published the first edition of the Oriya Testament in 1809. *(See January No. p. 18. In the title page of this edition it is said to be printed in 1807, but this is clearly a misprint. See Periodical accounts, vol. iii. p. 559; vol. iv. p. 52.)* It was a volume of 976 octavo pages, and the cost of printing, paper, &c., was estimated at £437. Two other editions were published, one in 1817, and the other in 1822. The entire Scriptures in Oriya were completed in 1815, and it is worthy of passing notice; and it is a fact with which probably few of our readers are acquainted that the Oriya was the second of the languages of India into which the whole Word of God was translated by the Serampore missionaries. The first Oriya Bible was

much blessed in the early history of the mission. The Scriptural knowledge which several of the disciples of the gooroo had obtained previously to their acquaintance with the missionaries, was derived, though not wholly so, from detached portions of this translation. When the gooroo sent the first deputation of his disciples to Mr. Lacey, *(See Missionary Observer for 1827. p.143.)* which was a year before the two brethren visited him in the retired spot where he taught his disciples, and where his dust is now sleeping - among the books which were laid before the missionary were a gospel, and the Acts of the Apostles; and "the brahmin who was at the head of the deputation (Gunga, of course), had obtained an acquaintance with the truths contained in these books which much surprised the christian teacher. This was the New Testament which the gooroo took in his hand, and, in token of reverence, placed on his head, using these memorable words, - " My children, there is truth, great truth; this is the great truth. All the silver and gold of the world cannot purchase this. Let this be your guide, my children. All is mean compared with this." Happy had it been for the devotee if he had regarded the weighty advice which he gave to his disciples! Then it would not have been necessary to add, that though employed in a wonderful manner by him whose resources are infinite, to prepare others for the kingdom of God, he was himself shut out from that kingdom by pride and unbelief. Then he would not have complained with bitterness, as he once did, that the missionaries reaped the corn which he had sown. All our elder converts were much indebted to Carey's Bible in the early stages of their christian course. This was the book which Divine grace taught them to prize, when brought out of darkness into marvellous light, and of which the dutiful reader could say, " How sweet are thy words unto my taste! yea, sweeter than honey to my mouth." The disclosures of the final day may reveal many evidences of the usefulness of the first Oriya Bible with which we are, at present, unacquainted; but enough is now known, not only to warrant the statement that those who, at considerable expenditure of time, labour and money, prepared and printed it, did not

labour in vain in the Lord; but to enable us to add, that it was blessed in that interesting and remarkable manner in which those who are conversant with the annals of biblical translations know, that first translaiions have often been. It appears to have been used in the mission from the commencement of our operations till 1840, *(A revised edition of some of the gospels had been published in 1836, or 1837. See Report)* when the revised version of the New Testament by Mr. Sutton was completed. This was followed in 1844 by the completion of the Old Testament, and by a second revision of the New Testament in 1845. Carey's Bible is still used by the pastor of the church, and by one or two of the elder native preachers: but the other brethren, European and native, use the revised version in their ministrations. It is the sincere prayer of the writer that the Oriya Scriptures, now in general use, may be blessed by the Holy Spirit to the enlightening of many ignorant minds, and to the edification of those who through grace have believed. Still, it should not be overlooked, that the influence which the first translation of the Word of God in any language has on subsequent ones, may render it an entensive blessing when its direct use is superadded. Tyndale substantially lives in our incomparable English Bible; and, in this view, the effect of Carey's labours for the good of Orissa will never die. To him belongs the honour of giving the Word of God to more of the nations of the earth-than any servant of Christ in any age; and it is a fact which ought to be familiar to all our young friends, and others who are interested in our mission, that he gave to Orissa her first Bible - a noble and peerless gift.

The Oriya tracts, prepared at Serampore, were signally blessed of God. On this point a little detail may not be improper.

The first tract which Gunga received, and which therefore claims our first attention, was written by one of the brethren at Serampore, on the folly of the worship of Juggernaut; and was designed to direct the reader to the one living and true God. *(No. 5, in Mr. Pegg's list; and not as has been generally supposed, No. 4.)* The Serampore missionaries were in the habit at that time of preaching

the gospel and freely distributiug religious tracts in various dialects at Gunga Sangor, a place of religious resort, and where an annual festival is held which is very numerously attended. On one of these occasions an Oriya pilgrim received this tract, who afterwards gave it to Gunga. He read it: it shook his confidence in idolatry, and led him to test the divinity of the idol in the way with which our readers are familiar, and which, so far as I am acquainted with missionary literature, is unexampled: but he had read in the Shastres of sages who had obtained, by abusing and even beating the object of their adoration, the blessing which they had in vain implored with prayers and tears; and he felt that he could not denounce the religion which his ancestors from time immemorial had regarded, without putting the divinity of his god to the last proof. He was not wholly free from superstitious dread when he made the bold attempt to arouse the lethargic deity: he had many fears that his daring presumption might enkindle the dreadful ire of the god, and that he might be struck dead on the spot; but the trial convinced him that "an idol was nothing in the world." It does not appear that he received much direct christian knowledge from this tract, but it excited an important and blessed influence in destroying his regard for idolatry and preparing the way of the Lord. This tract was published in 1818, in the interval between Peter leaving Orissa, and the arrival of our brethren, and furnishes pleasing -evidence that the Serampore missionaries' never lost sight of the evangelization of Orissa till other brethren arrived who were fully devoted to the work. It was received by Gunga probably about 1824. The identical tract, which is much worn and incomplete, is in the possession of Gunga's pastor. The writer has a complete copy of the tract. It has a representation of Juggernaut on the first page.

The second tract which Gunga received was the Immortal History of Christ. *(No. 3, in Mr. Pegg's list.)* This tract was first prepared in Bengalee, and it is said by a native christian, but I suspect from its excellence, that the European assistance rendered was not inconsiderable. A pleasing story is told of its translation into Oriya. A

pundit from Orissa went to Serampore for the purpose of seeking employment: to test his ability in the language Dr. Carey gave him this tract to translate, and, heathen as he was, he produced, it is said, the Oriya version. This appears to have been about 1816.*(See Pariodical Acounts, Vol. vi. p.140)* It is a little book of 170 pages: it contains much important christian truth, and may not unfitly be called - a harmony of the gospels in verse. It describes in the introduction - the creation of our first parents, the command of God to them, their fall, the demerit of sin, the universal prevalence of depravity, and the gospel remedy. The most interesting events in the history of Christ are stated in an intelligible and impressive manner; and some of the most important discourses of Christ are given. It is much more interesting to Hindoos as it is written in poetry, and in the same metre as the Bhagabot, one of their most popular works. I have heard Gunga say, that it was invested in his mind with a sacred character when he first read it, on account of being in the Bhagabot metre (nine syllables to a line). His first correct information of gospel truth was obtained from this publication, and he found it much more easy to understand than the Scriptures which he afterwards received. I have no doubt that some of the texts which he so readily repeated to the delight of the missionaries, as -" Not every one that saith unto me Lord, Lord," &c, "Except a man be born again," &c, - he had learned from the pages of this epitome of the history of Christ. Several years later this publication was exceedingly useful to Sebo Sahu and Lakshman Das. While perusing it together they carae to a versification of the words -"Men love darkness rather than light." "Ah! brother," said Sebo to his companion, "this darkness is sin," and as they thought of its dire ravages both the inquirers .wept. *(See the memoir of Sebo in the Quarterly Paper, No. 115, paragraph 20; and of Lakshman Das.' Q. P., No. 125. 17)* The third tract which claims special attention in this narrative is the catechism, or Das Agya, i.e., the Ten Commandments, the name by which it is designated in the memoirs of our native ministers, and by which it is generally known in Orissa. It was not received at so early

